ପ୍ରାଚୀ ଗ୍ରନ୍ଥମାଳା — ଅଷ୍ଟାଦଶ

# ଗୁରୁଭକ୍ତି ଗୀତା




ତୃତୀୟ ଖଣ୍ଡ

ପ୍ରକାଶକ

ଉତ୍କଳ ବିଶ୍ୱବିଦ୍ୟାଳୟ

# ଶ୍ରୀକୃଷ୍ଣ ଭକ୍ତି ଗୀତା

( ତୃତୀୟ ଖଣ୍ଡ )




ଅଚ୍ୟୁତାନନ୍ଦ ଦାସଙ୍କ କୃତ

ଟୀକା ଓ ମୁଖବନ୍ଧ ସହ

ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା

ସଙ୍କଳିତ ଓ ପ୍ରକାଶିତ

୧୯୬୭

ମୂଲ୍ୟ—ପାଞ୍ଚ ଟଙ୍କା ମାତ୍ର

# ମୁଖବନ୍ଧ

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଜୀବନ ଚରିତ ଓ ମାହାତ୍ମ୍ୟ ଅଣାକାର ସଂହିତାର ମୁଖବନ୍ଧରେ ସୁବିସ୍ତୃତ ଭାବରେ ଲିଖିତ ହୋଇଅଛି । ଗୁରୁଭକ୍ତି ଗୀତାର ଦ୍ୱିତୀୟ ଖଣ୍ଡର ମୁଖବନ୍ଧରେ ମଧ୍ୟ କିଛି କୁହା ହୋଇଅଛି । ବର୍ତ୍ତମାନ ସେ ବିଷୟରେ ଆଉ କିଛି କହିବା ଆବଶ୍ୟକ ମନେକରୁନାହିଁ ।

ମହାପୁରୁଷ ତ୍ରିକାଳଦର୍ଶୀ ଥିଲେ ଏହା ତଦୀୟ ଭକ୍ତପରମ୍ପରାରେ କଥିତ । ମହାପୁରୁଷଙ୍କ ମାଳିକାରେ ଭବିଷ୍ୟତ ବିଷୟମାନ କଥିତ ଥିବାର ପ୍ରକାଶ ହୁଏ । ଐତିହାସିକ ସେ ଦୃଷ୍ଟିରେ ବିଷୟମାନ ଦର୍ଶନ କରେ ନାହିଁ । ଗୁରୁଭକ୍ତି ଗୀତା ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଦ୍ୱାରା ରଚିତ ହେବା ବିଷୟରେ ଐତିହାସିକ ସନ୍ଦିହାନ, କାରଣ ଗୁରୁଭକ୍ତି ଗୀତା ୩ୟ ଖଣ୍ଡ ଅଷ୍ଟମ ପଟଳରେ—

ଅଚ୍ୟୁତର ବଚନ ସେ ଧର ଗୋପସୁତ ।  
ଗୁରୁଭକ୍ତି ଗୀତା ତୁମ୍ଭଙ୍କୁ ହେବ ହିତ ॥  
ତୁମ୍ଭ ଅଂଶମାନ ଏହି ଗ୍ରନ୍ଥ ଯେ ପଢ଼ିବ ।  
ଆଲୁଅ ହୋଇବ ତାଙ୍କୁ ସମସ୍ତ ଦିଶିବ ॥  
ହରେକୃଷ୍ଣ ବୋଲିଣ ଯେ ରଜନ ହୋଇବ ।  
ସେ ରଜନ କାଳେ ଏହି ଗ୍ରନ୍ଥ ପ୍ରକାଶିବ ॥

ପୁନଶ୍ଚ:—୧୧ଶ ପଟଳରେ—

କେତେ କହିବା କଳି କଥା । ଶୁଣି ଗୁଣିଲେ ବଡ଼ ବ୍ୟଥା ॥  
ରାମଚନ୍ଦ୍ରର ଅଂଶ ଯିବ । ମରହଟ୍ଠାର ରାଜ୍ୟ ହେବ ॥  
ମଲିକା ହେବ କିଛି ଦିନ । ଚୁହାଣ ନେବ ମ୍ଲେଚ୍ଛ ସ୍ଥାନ ॥  
ଏ ଅନ୍ତେ ଦ୍ୱିଜ ରାଜାହେବ । କଳଙ୍କି ତେବେ ପ୍ରକାଶିବ ॥  
ବୀରକେଶରୀ ରାଜାଠାରୁ । କଳଙ୍କି ପସାର ବଢ଼ିରୁ ॥

ଲିଖିତ ଉକ୍ତାଂଶ ଦ୍ୱୟରୁ ପ୍ରତୀତ ହୁଏ ଏହି ଗ୍ରନ୍ଥ ଲେଖକ ହରେକୃଷ୍ଣ ଦେବଙ୍କ ପରେ ମରହଟ୍ଟା ରାଜତ୍ୱ ଓ ବୀରକେଶରୀ ଦେବଙ୍କର ସମସାମୟିକ ଥିଲେ । ବୀରକେଶରୀ ଦେବ ୧୭୦୩ ଶକାବ୍ଦ ବା ୧୭୮୧ ସାଲ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଇତିହାସରୁ ଜଣାଯାଏ । ଐତିହାସିକ ଦୃଷ୍ଟିରେ ଏ ଗ୍ରନ୍ଥ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଲିଖିତ ହେବା ସମ୍ଭବପର ।

ତତ୍ତ୍ୱସମ୍ପ୍ରଦାୟର ଲୋକଙ୍କ ମତରେ ମହାପୁରୁଷ ତ୍ରିକାଳଦର୍ଶୀ ତହୁଁ ସେ ଏ ଗ୍ରନ୍ଥ ଲେଖିଅଛନ୍ତି । ସେ ଯାହାହେଉ ଗୁରୁଭକ୍ତି ଗୀତା ଅତି ଉପାଦେୟ ଗ୍ରନ୍ଥ । ଏହି ଗ୍ରନ୍ଥ ପାଠ କଲେ ଲୋକ ଯଥାଯଥ ଭାବରେ ଧର୍ମାଚରଣ କରି ନିଜର ଓ ଜଗତର ମଙ୍ଗଳ ସାଧନ କରିବ ଏବଂ ହରିପ୍ରେମ ରସରେ ବିହ୍ୱଳ ହୋଇ ପରମାନନ୍ଦ ଲାଭ କରିବ । ଉତ୍କଳର ପଞ୍ଚସଖାମାନେ ଜ୍ଞାନମିଶ୍ରା ଭକ୍ତିରେ ଅନୁରାଗୀ ଥିଲେ ଶୁଦ୍ଧା ଭକ୍ତିରେ ଯେପରି ଭକ୍ତ ପ୍ରେମ-ପାଗଳ ଜ୍ଞାନମିଶ୍ରା ଭକ୍ତିରେ ମଧ୍ୟ ସେ ତଲ୍ଲୀନ୍ । ଏ ବିଷୟରେ ବିଚାର ଅନ୍ୟତ୍ର ହୋଇଅଛି । ଦୁଃଖର କଥା ବିଶେଷ କାରଣ ବଶତଃ ଗ୍ରନ୍ଥର ମୁଦ୍ରଣକାର୍ଯ୍ୟରେ ଅନେକ ଭ୍ରମ ପ୍ରମାଦ ରହି ଯାଇଅଛି । ସହୃଦୟ ପାଠକଗଣ ଶୁଦ୍ଧିପତ୍ର ସାହାଯ୍ୟରେ ପାଠ ସଂଶୋଧନ କରି ଅନୁଗ୍ରହ ପୂର୍ବକ ଗ୍ରନ୍ଥ ଅଧ୍ୟୟନ କରିବେ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି—

--୦--

# ସୂଚୀପତ୍ର

୧ ମ ପଟଳ—ଗୁରୁଙ୍କ ମାହାତ୍ମ୍ୟ କଥନ, ଗୁରୁପ୍ରଣାଳୀ ; ବୃଣ ସମ୍ପ୍ରଦାୟ, ଶିଷ୍ୟର ଦୀକ୍ଷାଗ୍ରହଣ ବିଧାନ ।

୨ ୟ ପଟଳ—ବିଭିନ୍ନ ଯୁଗରେ ଖାଦ୍ୟର କଥନ ଛଳରେ କଳିରେ ଅନ୍ନ, ଜଳ, ତାମ୍ବୁଲାଦିର ଗୁଣ ଓ ଦାନର ମହିମା କଥନ ।

୩ ୟ ପଟଳ– ଅକ୍ଷରସଙ୍ଖ୍ୟାତା ଗୁରୁଙ୍କର ଶିଷ୍ୟଙ୍କୁ ମନ୍ତ୍ରମାନଙ୍କର ବୀଜ-କଥନ, ଚଣ୍ଡଦ୍ୱିଜର ଶାସ୍ତ୍ରରେ ଅନଧିକାର ।

୪ ର୍ଥ ପଟଳ—ଚତୁର୍ବିଧ ବୈରାଗ୍ୟକଥନ ; ଅଣାକ୍ଷର, ଏକାକ୍ଷର ତାରକ, ଶ୍ୟାମପଞ୍ଚାକ୍ଷର ଓ ହରେରାମ ମନ୍ତ୍ରର ଯଥାକ୍ରମେ ଗୋଲୋକ, ସତ୍ୟ, ତ୍ରେତା, ଦ୍ୱାପର ଓ କଳିରେ ପ୍ରଚାର କଥନ ।

୫ ମ ପଟଳ—ମାତା, ପିତା, ବନ୍ଧୁ, ଭିକ୍ଷୁ ଗୁରୁଜନ ଓ ଗୁରୁଙ୍କର ପୂଜାକଥନ ।

୬ ଷ୍ଠ ପଟଳ—ଭକ୍ତଙ୍କୁ ବରଦାନ ବିଷୟରେ କୃଷ୍ଣଙ୍କର ପ୍ରହ୍ଲାଦଙ୍କୁ ଉପଦେଶରେ ଅଷ୍ଟପ୍ରହରରେ ଅଷ୍ଟଗୁଣର ଧାରଣ ଓ କୃଷ୍ଣଧ୍ୟାନ କଥନ ।

୭ ମ ପଟଳ – ବସ୍ତ୍ରଦାନ କଥନ ।

୮ ମ ପଟଳ—ଗାନପୁଣ୍ୟ କଥନ ଓ ମନ୍ତ୍ରର କାର୍ଯ୍ୟକାରିତା ।

୯ ମ ପଟଳ—ଯୁଗ୍ମ ମଧ୍ୟ କଳି ପ୍ରଭାବ ବର୍ଣ୍ଣନ ।

୧୦ ମ ପଟଳ—ଗୁରୁପ୍ରଣାଳୀ କଥନରେ ଚୈତନ୍ୟଙ୍କର ଅଦ୍ୱୈତଙ୍କୁ ଦେଖା-
ଦେବା ଓ ହରିନାମ ଦେବା ଓ ଅଦ୍ୱୈତଙ୍କ ପିତାଙ୍କୁ ନିଜର
ପରିଚୟ ଦେବା ।

୧୧ ଶ ପଟଳ—ସନ୍ଥ ଲକ୍ଷଣ ।

୧୨ ଶ ପଟଳ—ସାଧୁଲକ୍ଷଣ ।

୧୩ ଶ ପଟଳ—ସୁଜନ ଲକ୍ଷଣ ।

୧୪ ଶ ପଟଳ—ଦାସ ଲକ୍ଷଣ ।

୧୫ ଶ ପଟଳ—୧୬ ଶ ପଟଳ—ବୈଷ୍ଣବ ଲକ୍ଷଣ ।

୧୭ ଶ ପଟଳ—ମହନ୍ତ ଲକ୍ଷଣ ।

୧୮ ଶ ପଟଳ—ମହାତ୍ମା ଲକ୍ଷଣ ।

୧୯ ଶ ପଟଳ—ନବଧା ଭକ୍ତି କଥନ ।

୨୦ ଶ ପଟଳ—ଗୋପଲୀଳା ବିହାର ଚରିତ ବର୍ଣ୍ଣନ ।

୨୧ ଶ ପଟଳ—ରାଧାକୃଷ୍ଣ ନିତ୍ୟ ଚରିତ ବର୍ଣ୍ଣନ ।

୨୨ ଶ ପଟଳ—ଅଷ୍ଟପ୍ରହର ସଖୀ ସେବା କଥନ ।

୨୩ ଶ ପଟଳ—ରସଗୁଣ କଥନ ।

୨୪ ଶ ପଟଳ—ଗୋପାଳ ଗାବ ଅଷ୍ଟଦଗ ବର୍ଣ୍ଣନ ।

୨୫ ଶ ପଟଳ—ଅଷ୍ଟପ୍ରହର ପୁଷ୍ପସେବା କଥନ ଓ ରାସଲୀଳା ବର୍ଣ୍ଣନ ।

୨୬ ଶ ପଟଳ—ସଖାଗଣଙ୍କ ବନର ନିୟମ କଥନ ।

୨୭ ଶ ପଟଳ—ବନ ଦର୍ଶନ, ମନ୍ତ୍ରଭେଦ କଥନ ଓ କଳା ଆଗମ ।

୨୮ ଶ ପଟଳ—ରାସଜର୍ଣ୍ଣତ୍ତ୍ୱ ବର୍ଣ୍ଣନ ।

୨୯ ଶ ପଟଳ— ଗୋପାଲ ମନ୍ତ୍ର ମୂର୍ତ୍ତିକଥନେ ଶ୍ୟାମ, ରାଧା କୃଷ୍ଣ ବର୍ଣ୍ଣନା

୩୦ ଶ ପଟଳ—ପଞ୍ଚାକ୍ଷର ମୂର୍ତ୍ତି ଉତ୍ପତ୍ତି ।

୩୧ ଶ ପଟଳ—ନାରାୟଣ ମନ୍ତ୍ର ମୂର୍ତ୍ତି ଭେଦ ।

୩୨ ଶ ପଟଳ—ବ୍ରହ୍ମ ସାବିତ୍ରୀ ମନ୍ତ୍ର ।

୩୩ ଶ ପଟଳ—କାମଦେବ କାମାକ୍ଷୀ ଦେବୀମନ୍ତ୍ର ମୂର୍ତ୍ତି ।

୩୪ ଶ ପଟଳ—ଗଣପତି ମନ୍ତ୍ର ମୂର୍ତ୍ତି କଥନ ।

୩୫ ଶ ପଟଳ— ଯନ୍ତ୍ର ମୂର୍ତ୍ତି ଓ ଅଣାକ୍ଷର ମନ୍ତ୍ରମୂର୍ତ୍ତି ।

୩୬ ଶ ପଟଳ—ଏକାକ୍ଷର ମୂର୍ତ୍ତି କଥନ ।

୩୭ ଶ ପଟଳ—ତାରକ ମନ୍ତ୍ର ମୂର୍ତ୍ତି ଦର୍ଶନ ।

୩୮ ଶ ପଟଳ—ରାଧାରୂପ ବର୍ଣ୍ଣନ ଓ ମନ୍ତ୍ରଭେଦ ।

୩୯ ଶ ପଟଳ— ଗୋପାଳ ମନ୍ତ୍ରରେ ସଖାଗଣ ଧ୍ୟାନ ସ୍ମରଣ ।

୪୦ ଶ ପଟଳ—ସଖୀ ସଖାଙ୍କ ଲୀଳା ।

୪୧ ଶ ପଟଳ—ରାସ ଗୁଣ କଥନ ଓ ମଣୋଦ୍ଧ ଭେଦ ବର୍ଣ୍ଣନ ।

୪୨ ଶ ପଟଳ— ମାନସୀ ସେବା ଓ ଧ୍ୟାନ ଯୋଗ ।

୪୩ ଶ ପଟଳ—ମନ୍ତ୍ର ସ୍ନାନ ।

୪୪ ଶ ପଟଳ—ମନ୍ତ୍ର ଗୁଣ ।

୪୫ ଶ ପଟଳ—ରସଗୁଣ ଓ ରାଧା ରୂପ ବେଶ ବର୍ଣ୍ଣନ ।

୪୬ ଶ ପଟଳ—ପାଦପଦ୍ମ କଥନ ।

୪୭ ଶ ପଟଳ - ବୃନ୍ଦାବନ ଲୀଳାଦି ଯନ୍ତ୍ର ।

୪୮ ଶ ପଟଳ—କୃଷ୍ଣ ବୟସ ବେଶ ବର୍ଣ୍ଣନ ।

୪୯ଶ ପଟଳ— ଚୌଷଠୀ ମହାନ୍ତ ନାମ ବର୍ଣ୍ଣନ ।

୫୦ ଶ ପଟଳ—ନନ୍ଦ; ବସୁଦେବ, ଯଶୋଦା ରୋହଣୀଙ୍କ ଜନ୍ମ ।

୫୧ ଶ ପଟଳ—ଗୋପାଳ ବେଶ ବର୍ଣ୍ଣନ ।

୫୨ ଶ ପଟଳ—ଅଷ୍ଟସଖୀ ଚରିତ ।

୫୩ ଶ ପଟଳ—ଅଷ୍ଟମଞ୍ଜରୀ ଚରିତ ।

୫୪ ଶ ପଟଳ—ରାଧାକୃଷ୍ଣ ଲୀଳା ରାତ୍ର ଦିବା ଅଷ୍ଟ ପ୍ରହର ଚରିତ ।

—※—

ଓଁ

# ଶ୍ରୀ ଗୁରୁ ଭକ୍ତି ଗୀତା

## ତୃତୀୟ ଖଣ୍ଡ

---

## ପ୍ରଥମ ପଟଳ

ଶ୍ରୀ ଗଣେଶାୟ ନମଃ, ଅବିଘ୍ନମସ୍ତୁ ।

ନମସ୍ତେ ପ୍ରଭୁ ଗୁରୁଦେବ । ଭବ-ସମୁଦ୍ରେ ତୁମ୍ଭେ ନାବ ॥
ତୁମ୍ଭେ ଯେ ଅଟ କର୍ଣ୍ଣଧାର । ତୁମ୍ଭ ଦୟାରେ ସିନ୍ଧୁ ପାର ॥
ଦୟା ଯେ ତୁମ୍ଭ ହେତୁ କଲେ । କୃଷ୍ଣ କରୁଣା କଲେ ଭଲେ ॥
ତୁମ୍ଭ କରୁଣା ଯଦି ହୋଇ । ବୈଷ୍ଣବ ହୃଦେ ଦୟା ବହି ॥
ଏ ଦେହ ଅଟଇ ଯେ ନାବ । ଧୀବର ତୁମ୍ଭେ ଗୁରୁଦେବ ॥
କୃଷ୍ଣ ସୁପବନ ଅଟନ୍ତି । ବୈଷ୍ଣବ ଆହୁଲା ପକାନ୍ତି ॥
ଗୁରୁ କୃଷ୍ଣ ଯେ ବୈଷ୍ଣବ । ଯେବେ କରୁଣା ତାଙ୍କ ହେବ ॥
ନାବ ଲାଗିବ କୂଳେ ଯାଇ । ତେବେ ଚୌରାଶୀ ନ ଲାଗଇ ॥
ମୁକୁନ୍ଦ ଅନନ୍ତ ଏ ବେନି । କର ଯୋଡ଼ି କରି ଦଣ୍ଡିନ ॥
କି ରୂପେ ଗୁରୁ ଅଙ୍ଗ କହ । ଫିଟିବ ଭବବନ୍ଧ ମୋହ । ୧୦ ।
ଶୁଣ ମୁକୁନ୍ଦ ଅନନ୍ତ ହେ । ରୋମ ମନ୍ତ୍ର ତୁମ୍ଭେ ବୁଝେଁ ॥
ଖୋଳ କରତାଳ ଗୁରୁ ଦେଇ । ତୁମ୍ଭେ ସୁମର ଭକ୍ତ ପାଇଁ ॥
ଗୋଲୋକ ଆୟୁଧ ତୁମ୍ଭର । ତୁମ୍ଭେ ରଖିଲେ ସିନା ପାର ॥
ମୃଦଙ୍ଗ ଶଙ୍ଖ ଯେ ଅଟଇ । କରତାଳ ଚକ୍ରରୂପ ହୋଇ ॥
ଏ ଶଙ୍ଖ ଚକ୍ର ତୁମ୍ଭ କରେ । ଯମ ଡରଇ ତୁମ୍ଭ ପୁରେ ॥
ଅକାଳ ମୃତ୍ୟୁ ଭୟ ନାହିଁ । କେବଳ କାଳ ମୃତ୍ୟୁ ହୋଇ ॥
ବ୍ରହ୍ମା ବିଷ୍ଣୁ ଯେ ଦେବତାୟେ । କାଳ ପୂରିଲେ ମୃତ୍ୟୁ ହୋଏ ॥

ଦେବତା ହୋଇଲେ ମର୍ତ୍ତ୍ୟରେ । ମରନ୍ତି ନରଙ୍କ ସଙ୍ଗରେ ॥
ବିଷ୍ଣୁହିଁ ମଧ୍ୟ ହେଲେ ଜାତ । ଦେହ ଛାଡ଼ନ୍ତି ମାୟାରେ ତ ॥
ଜୀବତ୍ୱମାନ ରହୁଥିବ । ତୁମ୍ଭେହେଁ ଦେହ ତ ଛାଡ଼ିବ । ୨୦ ।
ଗୋପାଳ କୁଳ ଉଦ୍ଧାରଣ । ତୁମ୍ଭ ଆତ୍ମାର ଜନ୍ମ ପୁଣ ॥
ତୁମ୍ଭେ ମୁଁ ଶୁଦ୍ର ଅଂଶେ ଜାତ । ନୀର କ୍ଷୀର ଯେ ଯେସନେ ମତ ॥
ନୀର କ୍ଷୀର ଯେ ସମ ଜଳ । ମିଶିଲେ ନୀର ହୋଇଯେ ବାଳ ॥
ଅନ୍ତ୍ୟଜ ଅମ୍ଭେ ଶୁଦ୍ରେ ଜାତ । ଶୁଦ୍ର କୁଳରେ ଗୋପସୁତ ॥
ସଞ୍ଚ ବିସଞ୍ଚ ତୁମ୍ଭେ ଜାଣ । ପରମ ଗୁରୁ କଥା ପୁଣ ॥
ମନ୍ତ୍ର ଶ୍ରୀନ ଗୁରୁମାନ । ଜାଣନ୍ତି ସକଳ ଯେ ଜନ । ୨୬ ।
ନିର୍ଗୁଣ ଗୁରୁ ଅଙ୍ଗ ପୁଣ । ଜାଣନ୍ତି ଯେତେକ ସୁରଗଣ ॥
ଜନମେ ଜନମେ ଯେ ତୁମ୍ଭେ । ଏକ ଆତ୍ମା ଯେ ତୁମ୍ଭେ ଅମ୍ଭେ ॥
ସତ୍ୟରେ ଋଷି ଅଙ୍ଗେ ଜାତ । ତ୍ରେତାରେ ବାନରେ ସମ୍ଭୂତ ॥
ଦ୍ୱାପରେ ଗୋପାଳେ ଜନମ । କଳିରେ ଶୁଦ୍ରୀ ଶୁଦ୍ରସମ । ୩୦ ।
ତୁମ୍ଭେ ଶୁଦ୍ରକୁ ନିସ୍ତାରଣେ । ଜନମ ହେଲ ଗୋପଗଣେ ॥
ନିସ୍ତାର ପଥ ହେତୁ କର । ନିର୍ଗୁଣ ଗୁରୁ ମନେ ଧର ॥
ଶ୍ରୀଗୁରୁ ମହାଶୂନ୍ୟ କହି । ତହୁଁ ବ୍ରହ୍ମ ଯେ ତହିଁ ହୋଇ ॥
ତୃତୀୟେ ପରଂବ୍ରହ୍ମ ହେଲେ । ଚତୁର୍ଥେ ବ୍ରହ୍ମ ଯେ ହୋଇଲେ ॥
ପଞ୍ଚମେ ନୀଳ ଦୀକ୍ଷା ପାଇ । ଓଁକାର ତହିଁ ପୁଣ ହୋଇ । ୩୫ ।
ତଦନ୍ତେ ପରଂବ୍ରହ୍ମ ଶିଷ୍ୟ । ଆଦିମୂଳ ଯେ ପରକାଶ ॥
ପୁଣ ପ୍ରକୃତି ଦୀକ୍ଷା ପାଇ । ତହିଁ ବିନ୍ଦୁ ଯେ ଶେଷ ହୋଇ ॥
ପୁଣ ଯେ ବ୍ୟୋମ ଶିଷ୍ୟ ହେଲେ । ପ୍ରଣବ ପୁଣ ସଞ୍ଚରିଲେ ॥ ୩୮ ।
ପୁଣ ଯେ ମହାତତ୍ତ୍ୱ ଶିଷ୍ୟ । ଆଦି ନାରାୟଣ ପ୍ରକାଶ ॥
ଏମନ୍ତେ ନାରାୟଣ ଅଂଶେ । ସନକାଦି ଯେ ହେଲେ ଦାସେ । ୪୦ ।
ମାରକଣ୍ଡ ଯେ ମାର୍ଗ ବହି । ନାରଦ କୃପାକଲ କହି ।

---

୨୬-୧—ପୀଡ଼—ଖ; ପୀଡ଼ା—କ । ୩୫-୧—ବ୍ରଜ—କ, ଖ । ୩୮-୧—ବମଶିଷ୍ୟ—କ, ୩୮-୨—ପ୍ରଲମ୍ବ—ଗ, କ ।

ସେ ଗୁପ୍ତମଠ ଯେ ବୋଲାଇ । ଏମନ୍ତେ ସତ୍ୟଯୁଗ ଯାଇ ॥
ତ୍ରେତା ଯୁଗରେ ମଠ ହୁଇ । ଦଶ ସନ୍ନ୍ୟାସୀ ଯେ ଅବୋଣ ॥
କଳିର ଶିଷ୍ୟ ଭୋଗ କଲ । ସନ୍ନ୍ୟାସ ଧର୍ମ ଆଚରିଲେ । ୪୪ ।
ରାମାନନ୍ଦ ଯେ ଜମାଦତ୍ତ୍ୟ । ବିଷ୍ଣୁ ସ୍ୱରଙ୍ଗୀ ମାଧବ ଜ । ୪୫ ।
ଏ ହୁଇ ସନ୍ନ୍ୟାସୀ ବୈଷ୍ଣବ । ଗୁପ୍ତ ସଂପ୍ରଦା କରେ ଜୀବ ॥
ରାମାନନ୍ଦ ଯେ ଜମାନନ୍ଦ । ବିଷ୍ଣୁ ଶ୍ୟାମ ଯେ ମାଧବନ୍ଦ ॥
ଏ ଗୁପ୍ତ ସଂପ୍ରଦା ଅଟନ୍ତି । ବୈଷ୍ଣବ ଜନ ଏହା ଚିନ୍ତି ॥
ସଭାରେ ଗୁରୁପଣ କଲେ । ଜଗତାର ଗୁରୁ ସମର୍ପିଲେ । ୪୯ ।
ଯାଆନ୍ତି ନାରାୟଣ ପାଶେ । ମହାଶୂନ୍ୟକୁ ଭେଟ ନୋହେ ॥
ଏ ମହାଶୂନ୍ୟ ବନ୍ଧ ନାହିଁ । ଗୁରୁ ଦର୍ଶନ ତାର କାହିଁ । ୫୧ ।
ମହାଶୂନ୍ୟକୁ ନ ଚହ୍ନିଲେ । ଅଣଗୁରୁଆ ବୋଲି ଭଲେ ॥
ଗୁରୁ ଚହ୍ନାନ୍ତି ମହାଶୂନ୍ୟ । ତେବେ ବୋଲିବା ଗୁରୁ ଧନ୍ୟ ॥
ଯେ ଶିଷ୍ୟ ମହାଶୂନ୍ୟ ଚହ୍ନେ । ଶିଷ୍ୟ ବୋଲିବା ସେହୁ ଜନେ ॥
ଯେ ମହାଶୂନ୍ୟ ଚହ୍ନି ନାହିଁ । ସେ ଜୀବ ନିସ୍ତରିବ କାହିଁ ॥
ମହାଶୂନ୍ୟରେ ଗୁରୁ ସ୍ଥାନ । ମହାଶୂନ୍ୟଟି ତତ୍ତ୍ୱ ଧନ ॥
ମହାଶୂନ୍ୟଟି ଯାହା କହ । ଅକାର ବିନ୍ଦୁ ସେ ଅଟଇ ॥
ବ୍ରହ୍ମ ବୋଲିଣ ଯାହା କହ । ଉକାର ମାତ୍ରା ସେ ଅଟଇ ॥
ଜୀବ ବୋଲିଣ ଯାହା କହ । ଏକାର ମାତ୍ରା ସେ ଅଟଇ ॥
ଏକାର ବୋଲି ଯାହା କହ । ଆକାର ଗାର ସେ ଅଟଇ ॥
ଆଉ ବ୍ରହ୍ମ ସେ ଯାହା କହ । ଇକାର ମାତ୍ରା ସେ ଅଟଇ ॥
ଆଦିମୂଳ ଯେ ଯାହା କହ । ସେ ଅଣମଣ୍ଡଳ ବୋଲାଇ ॥
ପ୍ରକୃତି ବୋଲି ଯାହା କହ । ସେ ଅର୍ଦ୍ଧ ମାତ୍ରା ଯେ ଅଟଇ ॥
ବ୍ରହ୍ମ ବିଦ୍ୟା ଯେ ଯାହା କହ । ଉକାର ଅଂଶ ସେ ଅଟଇ । ୬୪ ।

---

୪୪-୨—ଆଚ ହେଲ—ଖ, ଗ । ୪୫-୧—ରାମାଦତ୍ତ ଯେ ଜମାଦତ୍ତ—ଖ, ଗ । ୪୯-୨—ଜଗତାର ଗୁରୁ ସମର୍ପିଲେ—ଗ । ୫୧-୧—ବନ୍ଧ ନାହିଁ—କ । ୬୦-୧—ଓଁକାର—ଗ, ଉଁକାର—ଖ । ୬୪-୧—ବିନ୍ଦୁ—କ, ଖ ।

ହୃଦ ବୋଲଣ ଯାହା କହି । ମକାର ଅଂଶ ସେ ଅଟଇ ॥
ମହତତ୍ତ୍ୱ ଯେ ଯାହା କହି । ପ୍ରଳମ୍ବ ଆଦ୍ୟ ଅଂଶ ସେହି ॥
ପ୍ରଳମ୍ବ ବୋଲି ଯାହା କହି । ଅକାର ଅଂଶ ସେ ଅଟଇ ॥
ଏମନ୍ତ ଆଦି ନାରାୟଣ । ଗୁରୁରୂପରେ ରହନ୍ତି ପୁଣ ॥
ସନକାଦି ଯେ ଯାହା କହି । ଏ କ୍ଷେତ୍ର ଅକ୍ଷର ଅଟଇ ॥
ଆବର ଅଂଶ ଯେତେ କହି । ସ୍ୱେ ଷଡ଼ଚକ୍ର ଯେ ଅଟଇ ॥
ଗୁରୁ ପୀଠ ଯେ ନାମମାନ । ଷୋଳ ଅକ୍ଷରେ ତାଙ୍କ ସ୍ଥାନ ॥
ଆବର ଦ୍ୱାଦଶ ଦଳରେ । ଛଡ଼ ଗୁଣ ଯେ ଅଂଶ ଧରେ ॥
ଆବର ବେଦାକ୍ଷର କହି । ହାଣେ କ୍ଷଣେ ଯେ ହୁଳି ରହି ॥
ଅ ଆ ଠାବକୁ ଅଂ ଅଃ ଯାଏ । କ ଅ ଠାବକୁ ଠ ଅ ହୋଏ ॥
ଡ ଅ ଠାବକୁ ଫ ଅ ଗଣ । ବ ଲ ମିଳିଲେ ହକ୍ର ପୁଣ ॥
ବ ଶ ଶୃଙ୍ଗ ମିଶିଲେ ତହିଁ । ପଞ୍ଚାଶ ଅକ୍ଷର ବୋଲଇ ॥
ସ୍ୱେଚ୍ଛନ୍ତି ଗୁରୁ ଅଙ୍ଗ ଜାଣ । ଏଥିକୁ ନାମମାନେ ପୁଣ ॥
କେତେ ଗୁରୁ ଯେ ମାନେ ଗଲେ । ଯୁଗାଦି ସ୍ଥାନ ଭୋଗକଲେ ॥
ମହାଶୂନ୍ୟକୁ ଯେ ଚହିଁଣ । ସେ ଗୁରୁ ଲଭନ୍ତି ମରଣ ॥
ସେ ପୁଣ ନାତସ୍ୱରେ ଜାତ । ପାପରେ ନୁହନ୍ତି ସଙ୍ଗତ । ୮୦ ।
ମହାଶୂନ୍ୟରେ ସଙ୍ଗ ଯହିଁ । ସେ ସଙ୍ଗ ଛେଦନ କରଇ ॥
ପାଷାଣ ନାବରେ ବସିଲେ । ବୁଡ଼ି ମରନ୍ତି ପ୍ରାଣୀ ଭଲେ ॥
ଅନ୍ଧକୁ ଅନ୍ଧ ନୁହେ ସଙ୍ଗ । ବଧିର ଜାଣେ କି ପ୍ରସଙ୍ଗ ॥
ଜଡ଼ କି ପ୍ରସଙ୍ଗ କହିବ । ସେ ଗୁରୁ ଏଣୁ ଅଙ୍ଗ ଭାବ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ପୁଣ । ଅଷ୍ଟ ପ୍ରହର ରସଗୁଣ । ୮୫ ।
କେଶାନ୍ତ ଗ୍ରନ୍ଥୀ ଯେ ଅବଗାହି । ସମାଧି ମିଶି ଅଠ ହୋଇଁ ॥
ଏ ଅଷ୍ଟ ଗୁଣ ଯେ ଜାଣନ୍ତି । ତାହାକୁ ବୋଲି ଗୁରୁ ଶକ୍ତି ॥
ଅପେ ନ ଜାଣେ, କରେ ଶିଷ୍ୟ । ଗୁରୁ ଶିଷ୍ୟ ଯେ ଯାନ୍ତି ନାଶ ॥୮୮॥

---

୮୦—୨-ତାପରେ ନୁହନ୍ତି ସଙ୍ଗୀତ-କ
୮୪—ଜାନ କି ପ୍ରସଙ୍ଗ କହିବ । ସେ ଗୁରୁ ଯହିଁ ଅଙ୍ଗଭାବ-କ ।
୮୮—ଏହା ନ ଜାଣି କରେ ଶିଷ୍ୟ—ଖ, ଗ ।

ଅଭାପତ୍ରିସ୍ୱ ପ୍ରାପ୍ତ ହୋଇ । ସେ ଗୁରୁ ଶିଷ୍ୟ ଜାଣ ଯାଇ ॥
ଶିଷ୍ୟଙ୍କୁ ନାମ ଦେଲେ ପୁଣ । ବସିବ ପୁରୁବ ମୁଖେଣ ॥
ନିର୍ଗୁଣ ବାର ପୀଢ଼ି ପୁଣ । କହିବ ସନ୍ତେ ସୁମରଣ ॥
ଶିଷ୍ୟଙ୍କୁ ମନ୍ତ୍ରେ ଶୁଦ୍ଧ କରି । ଯାଷା କହିବ କର୍ଣ୍ଣେ ଧରି ॥
ସୁବର୍ଣ୍ଣ ଲେଖନରେ ପୁଣ । ଅଣାକ୍ଷର ଜିହ୍ୱା ଲେଖିଣ ॥
ବେନି ବସନ ନବତନ । ପିନ୍ଧିବ ଶିଷ୍ୟ ସେ ଯତନ ॥
ଉତ୍ତମ ପେଣ୍ଡା ସେ ପାଗ୍ରେଡ଼ା । ଗୁରୁ ଅଗ୍ରରେ ଦେବ ବେଢ଼ା ॥
ଛେନା କଦଳୀ ସେ ଶ୍ରୀଫଳ । ନବାତ ସର ଦଧି ଜଳ ॥
ଉଖୁଡ଼ା ଉଆ ଛଡ଼ା ଲିଆ । କନ୍ଦମୂଳ ସେ ପାନ ଗୁଆ ।
ମିଠାଇ ଖଜା ସେ ପାପଡ଼ । ସର ଚେଣି ସେ ଚୁଡ଼ା ମୁଢ଼ି ॥
ନାମ ଦେଇଣ ଭୋଗ ଦେବ । ଉପୁଯୋଗରେ ସେ ମିଳିବ ॥
ବୈଶାଖ ଫଗୁଣ ମାସରେ । ଶ୍ରାବଣ ଭାଦ୍ରବ ମାସରେ । ୨୦•
ଶୁକ୍ଳ ପକ୍ଷରେ ପୁରୁଷ । କୃଷ୍ଣ ପକ୍ଷରେ ସ୍ତ୍ରୀର ଅଂଶ ॥
ଗୁରୁ ଶୁକ୍ର ସେ ସୋମବାରେ । ନାମ ସେ ଦେବ ସେ ଯୋଗରେ ॥
ଗୋପାଳ କୁଳ ଉଦ୍ଧାରଣ । ମୁକୁନ୍ଦ ଅନନ୍ତ ପଦ ଜାଣ ॥
ଗୋପାଳ କୁଳ ଉଦ୍ଧାରଣ । କହିଲୁ ଗୁରୁ ଭକ୍ତମାନ ॥
ଗୋପ ବଂଶରେ ଯେତେ ଜନ । ଦାନ ଅତ୍ୟନ୍ତ କଥା ଯେନ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ଶିଷ୍ୟ ଉଦ୍ଧାରଣ ଗୁରୁଶିଷ୍ୟ
ସମ୍ବାଦେ ନାମ ପ୍ରଥମ ପଟଳ ।

# ଦ୍ୱିତୀୟ ପଟଳ

ମହାନଦୀର ସେ ଉତ୍ତରେ । ଗ୍ରାମ ଝେଣଲେ ନାମ ଧରେ ॥
ବାରଟି ଗୋପାଳ ମଧ୍ୟରେ । ଅଚ୍ୟୁତ ମିଳି ସେ ଠାବରେ ॥
ରାମଚନ୍ଦ୍ରଙ୍କ ବାର ସଙ୍ଗ । ପାଞ୍ଚଶ ବୈଷ୍ଣବଙ୍କ ଅଙ୍ଗ ॥
ଗୁରୁଭକନ୍ତ ଗୀତା ଲେଖି । ପଞ୍ଚାଶ ଜନ ହୋଇ ସୁଖୀ ॥
ଭୋଜନ କମନ୍ତେ କାଞ୍ଚନ । ମୁକୁନ୍ଦ ପିତା ସେ ପଗୃଣ ॥
ବିଜୟ କର ସାଧୁଜନ । ଜବଡ଼େ ଦୋଷେଇ ବଧାନ ॥
ଅଚ୍ୟୁତ ରାମଚନ୍ଦ୍ର ଦୁଇ । ମୁକୁନ୍ଦ ପିତାକୁ ସେ କହି ॥
ଅନ୍ନ ଯେ ଦେଲେ ଜପ ଫଳ । ଏ କଥା ଜାଣ ନ ଗୋପାଳ ॥
ଭଗବାନ ଯେ ଗୋପ ଜନ୍ମେ । ମୋ ଗୃହରେ ଜାବା ଜନ୍ମ ହୋଇଥ୍ୟେ ॥
ଅନନ୍ତ ପିତା ପାଦତଳେ । ଭୂମିରେ ପଡ଼ିଲେ ନଷ୍ଟଲେ । ୧୦ ।
ଏଥିର ଫଳ ଗୁରୁ କହ । ମନରୁ ଫିଟିବ ସନ୍ଦେହ ॥
ମୁକୁନ୍ଦ ଅନନ୍ତ ହେ ଦୁଇ । ତୁମ୍ଭର ପିତା ଯା ପୁଚ୍ଛଇ ॥
କହୁବା ସବ ଗୋପ ଶୁଣ । କହିଲେ ଯେତେ ଗୋପଗଣ ॥
ଗୃହଲା ଗୋହିକ ସେ ପୁଣ । ସୁନା ନଉତି ସୂଚାପଣ ॥
ସେବର ଲେଖିଲେ ଯେତେ ହେବ । ନେଇ ତାହା ଗଣିଣ ପାଇବ ॥
କୁଶର ଅଗ୍ରେ ବିନ୍ଦୁ ଯେତେ । ମୁକୁତା ଫଳ ହୋଇଥ୍ୟେ ତେତେ ॥
ଦଧିର ଫଳ ସେ ମୁକୁତା । ଭୋଗ କରାଇ ଯେତେ ଦାତା ॥
ବାଟୁଳି ସମାନେ ସେ ଦିଅ । ମିଶ୍ର ଫଳର ସମ ଦିଅ ॥
ପତର ଖଣ୍ଡି କି ସେ ପୁଣ । ରୂପାର ମୁଲ୍ୟ ତାକୁ ଜାଣ ॥
ମୁକୁତା ସର ଯେତେ ହୋଇ । ତୁଳର ଫଳ ତେତେ ହୋଇ ॥
ତମ୍ବାର ଅଗୁଆ ପ୍ରମାଣେ । କାଳର ଫଳ ହୋଇଥ୍ୟ ତେଉଣେ ॥
ରୂପାର ନଉତି ଯେତେକ । ଘଣ୍ଟିର ଫଳ ସେତେ ତକ ॥
ସେ ଭୂମି ଖଣ୍ଡିରେ ବସାଇ । ଅଷ୍ଟରତନ ଫଳ ସେହି ॥
ତାହେ ବସାଇ ଅନ୍ନ ଦେଇ । ଏତେକ ଫଳ ସେ ଲଭଇ ॥
ସେ ଜନ ପୃଥ୍ୱୀ ମଧ୍ୟେ ଧନ୍ୟ । ଶୁଣ ଗୋପାଳ ଦୁଇଜଣ । ୧୫ ।

ଗ୍ରାମେ ଗୋପାଳ ଯେତେ ଥିଲେ । ସମସ୍ତେ ଦଣ୍ଡବତ କଲେ ॥
ଅନନ୍ତ ମୁକୁନ୍ଦ ଯେ ଶୁଣ । ଗ୍ରାମୁରେ ପଶୁବୁଛୁ ପୁଣ ॥
ଦେଖ ଲୋକ ତ ଗଡ଼ ପାଇ । ଭୋକତା କହୁପେ ଡରଇ ॥
ଶୁଣ ହେ ମୁକୁନ୍ଦ ଅନନ୍ତ । କହିବା ତାହାର ତଦନ୍ତ ॥
ଅଣଅକ୍ଷର ସୁମରିଲେ । ଅନ୍ନର ଦୋଷ ହରେ ଭଲେ । ୩୦ ।
ଏକା ଅକ୍ଷର ସୁମରିଲେ । ଦୁଧର ଦୋଷ ହରେ ଭଲେ ॥
ତାରକ ମନ୍ତ୍ର ସୁମରଣ । ଘୃତର ଦୋଷ ହରେ ପୁଣ ॥
ଶ୍ୟାମ ଯେ ପଞ୍ଚାକ୍ଷର ଘୁଣି । ଲବଣ ଦୋଷ ହରେ ପୁଣି ॥
ଶୂନ୍ୟ ଭଜନ ମନ୍ତ୍ର ଧ୍ୟାଇ । ହାଣ୍ଡି କାଳ ଦୋଷ ହରଇ ॥
ହରେ ରାମ ଯେ ମନ୍ତ୍ର ଗୁଣ । ପତ୍ରର ଦୋଷ ଯିବ ପୁଣ ॥
ପଦ୍ମର ଜଳର ଯେ ଫଳ । ଦେଲେ ଲଭଇ ତେତେ ଫଳ ॥
ପଞ୍ଚଅକ୍ଷର ସୁମରିଲେ । ଭୂମିର ଦୋଷ ହରେ ଭଲେ ॥
ହରେକୃଷ୍ଣ ଯେ ମନ୍ତ୍ର ଘୁଣି । ଜଳର ଦୋଷ ହରେ ପୁଣି ॥
ପଦ୍ମର ଜଳର ଯେ ଫଳ । ଦେଲେ ଲଭଇ ତେତେ ଜଳ ॥

ଗୁଆର ଫଳ ଯେ ପ୍ରବାଳ । ଦେଲେ ଲଭଇ ତେତେ ଫଳ ॥
କୃଷ୍ଣ ମନ୍ତ୍ରକୁ ସୁମରିଲେ । ଗୁଆର ଦୋଷ ତେବେ ହରେ ॥
ପାନର ଫଳ ଯେତେ ହୋଇ । ଲୀଳା ଦେଖିଲେ ତେତେ ହୋଇ ॥
ରାଧିକା ମନ୍ତ୍ର ସୁମରିବ । ତାମ୍ବୁଳ ଦୋଷ ଯେ ହରିବ ।
ଚୂନର ଫଳ ଯେତେ ଗୁଣ । ବାଛିବୁଁ ଏହି ପରମାଣ ॥
କାମ ଗାୟତ୍ରୀ ସୁମରିବ । ଚୂନର ପାପ ଯେ ହରିବ ॥

ଖଇର ଫଳ ଏବେ ଶୁଣ । ସୁବର୍ଣ୍ଣ ଯେତେକ ତୁଳେଣ ॥
ନାରାୟଣ ଯେ ମନ୍ତ୍ର ଘୁଣି । ଖଇର ଦୋଷ ହରେ ପୁଣି ॥
ବ୍ୟଞ୍ଜନ ଫଳ ଗୁଣ ଶୁଣ । ତମ୍ବା ଯେତେକ କୋଟି ପୁଣ ॥
ବ୍ରହ୍ମ ଗାୟତ୍ରୀକି ଭଜିଲେ । ଏଥିର ଦୋଷ ହରେ ଭଲେ ॥
ତାଳର ଫଳ ଗୁଣ ଶୁଣ । ପିତଳ ଯେତେକ ତୁଳେଣ । ୪୦ ।
ଗାୟତ୍ରୀ ଛନ୍ଦକୁ ସୁମରି । ଭୋଗ ତା ଜନ ପାପ ହରଇ ॥

ଶାକର ଫଳ ଗୁଣ ଶୁଣ । କଂସାର ଭୁଲେ ଯେତେ କାଣ ॥
ଗୋପାଳ ମନ୍ତ୍ରକୁ ସୁମର । ଭକ୍ତର ଦୋଷମାନ ହର ॥
ସକଳ ମନ୍ତ୍ର ମାନ ଶୁଣ । ଇହା ଗୋଟିଏ ବୋଲି ଜାଣ ॥
ଭୋଜନ ଚକ୍ଷୁ ଯେ ଅଟଇ । ଭୁଞ୍ଜିଲେ ମନ୍ତ୍ର ଯେ ଫିଟଇ ॥
ବସି ଯେ ଅନ୍ନ ଦେଉଥାଇ । ବ୍ରାହ୍ମଣ ବୈଷ୍ଣବ ରଖାଇ ॥
କୁଟୁମ୍ବ ବନ୍ଧୁ ଯେ ବଦେଶୀ । ଯେ ଅନ୍ନଦାନ ଦିଏ ହସି ।
ଗଙ୍ଗା ଗୟା ଯେ ବାରାଣସୀ । ତା ହସ୍ତେ ସବ ତୀର୍ଥ ବସି ॥
ତିନିଗୋଟି ଯେ ଅଛେ ତୀର୍ଥ । ଅଛନ୍ତି ତିନି ପୁରେ ସେ ତ ॥
ସ୍ୱର୍ଗରେ ଛନ୍ତି ଦେଢ଼ ଗୋଟି । ମର୍ତ୍ତ୍ୟରେ ଅଛୁ ଏକ ଗୋଟି ॥
ପାତାଳେ ଗୋଟିଏ ଅଟଇ । ଏତେକ ତୀର୍ଥ ଫଳ ପାଇ ॥
ଏଣୁକି ଅନ୍ନ ଶରଧାରେ । ନ ଦିଅ୍ୟେ ପ୍ରାଣୀ ସୁଚିନ୍ତାରେ ॥
ସୁଚିତ୍ତେ ଅନ୍ନ ଯେବେ ଦେବ । ଏତେକ ଫଳ ସେ ଲଭିବ ॥
ସେ ଜନ ମଲେ ପୁଣ ଯାଇ । ଗୋଲୋକ ପୁର ସେ ଲଭଇ ॥
ଶ୍ରୀରାଧା କୃଷ୍ଣର ସେବାରେ । ରହନ୍ତି ଗୋଲୋକ ଯେ ପୁରେ ॥
ବୈଷ୍ଣବ ଭୋଜନ କାରଣ । ଏ ମନ୍ତ୍ରମାନ ସୁମରଣ ॥
ଦାତା ଲଭଇ ଅନ୍ନ ଫଳ । ଭୋକତା ପାପରୁ ନିର୍ମଳ ॥
ପର୍ବତ ପ୍ରାୟ ପାପ ତୁଳା । ଯେସନେ ଜାଳୁଥାଇ ଚୂଳା ॥
ମନ୍ତ୍ରରେ ବଳେ ପୋଡ଼ିଯାଇ । ଆପଣେ ତରଣ ତାରଇ ॥
ଶୁଣ ମୁକୁନ୍ଦ ହେ ଅନନ୍ତ । ପବନ ଉତ୍ଥାନ ଆଦିତ । ୭୦ ।
ବସୁ ବାଳକ ହେ ଗୋବନ୍ଦ । ସୁଦାମ ବୃନ୍ଦାବନ ନନ୍ଦ ॥
ମଥୁରା ଯାଦବ ତୁମ୍ଭେ ତ । ଖୋଲ ନିର୍ମଳ ତୁମ୍ଭ ହସ୍ତ ।
ଏ ଧ୍ୟାନମାନଙ୍କରେ ପୁଣ । ସକଳ ପାପ ଯେ ହରଣ ॥
ଯେ ସ୍ଥାନେ ବଳସ୍ତ୍ର ନେଇବ । ଏତେକ ମନ୍ତ୍ର ସୁମରିବ ॥
ଦାତାକୁ ଏ ମନ୍ତ୍ରେ ଉଦ୍ଧାର । ଆପଣେ ପାପୁଁ ହେବ ପାର ॥
ଏ ଧ୍ୟାନ ଧ୍ୟାନ କଲେ ପୁଣ । ସକଳ ପାପ ଯେ ହରଣ ॥
ଯେ ସ୍ଥାନେ କାର୍ତ୍ତିକ ନେଇବ । ଏତେକ ମନ୍ତ୍ର ସୁମରିବ । ୭୭ ।

୭୭—ଏତେକ ମନ୍ତ୍ର ନ ଜପିବ । ଆପଣା ପାପେ ଗ୍ରାସି ହେବ—ଖ

ଯେ ଅନ୍ନ ଦିଅନ୍ତି ଯେ ଦାନ । ଦେବେ କରନ୍ତି ତାଙ୍କୁ ମାନ୍ୟ
ଯେ ଅନ୍ନ ବସ୍ତ୍ର ଦେଉ ଥାଇ । ତା ପୁଣ୍ୟ ମୁଖେ କେବା କହି ॥
ଯେ କୋଟି ଗାବ ଦାନ ଦେଇ । ଅନ୍ନ ଦାନକୁ ସରି ନୋହି ॥
ଦୁଧରେ ପ୍ରାଣ ପୋଷା ହୋଇ । ଅନ୍ନକୁ ଦୁଧ ସମ ନୋହି ॥
ଶୁଣ ରେ ମୁକୁନ୍ଦର ବାପ । ଅନନ୍ତ ପୁଣ୍ୟ ତ ପ୍ରାପତ ॥
ତୁମ୍ଭର ଦୁଇ ଜନ ଘର । ଗୋରୁ ମଇଷି ତ ଅପାର ।
କୃଷି ତ ବହୁତ ଅଛଇ । ଦୁକେଣ ରାଜ ପାଞ୍ଚ ଦୁଇ ॥
ତୁମ୍ଭର ପୁତ୍ରମାନେ ପୁଣ । ତେଜିଲେ ଏତୁ ଧନ ଜନ ॥
ହରି ବଣିଜ ସମ୍ଭାଳିଲେ । ସଂସାର ବଣିଜ ତେଜିଲେ ॥
ଗୋପାଳ କୁଳ ଉଦ୍ଧାରିବ । ତୁମ୍ଭର ବଂଶକୁ ତାରିବ ॥
ଯେନ୍ତୁ କୁଳରେ ହୋନ୍ତି ଦାସ । ଉଦ୍ଧାର କୋଟି ଯେ ପୁରୁଷ ॥
କେତେ ବା ଗ୍ରାମ ଜନମାନେ । ଉଦ୍ଧାର କରିବେ ଏମାନେ ॥
ଗୋଲୋକ ଆୟୁଧ ଏ ବହି । ଭ୍ରମିବେ ସଂସାର ଏ ମହି । ୯୦ ।
ଖୋଳ କରତାଳ ଧାସ ତୂଳ । ବୀଣା ଖଞ୍ଜଣୀ ଯେ ମର୍ଦ୍ଦଳ ॥
ମୟୂର ମୁଠା ପଞ୍ଝା ଧାସ । ଯେ ଗୃହେ ରଖିଥାନ୍ତି ପାଶ ॥
ତା ଗୃହେ ଯମ ଯେ ଡରଇ । ଅକାଲମାନ ନ ପଶଇ ॥
କାଳ ଯେ ତନ୍ନ ପୁରେ ଥାଇ । କାଳରେ ସର୍ବନାଶ ଯାଇ ॥
କାଳରେ ବ୍ରହ୍ମା ବିଷ୍ଣୁ ଦେବ । ଯେ ଅବା ତାର ଯୁଗ ଶିବ ॥
ଅବଶ୍ୟ କାଳେ ନାଶ ଯାଇ । କେବଳ କଥା ମାତ୍ର ଥାଇ ॥
ଏ ବେନି ପୁତ୍ରଙ୍କର ପୁଣ । ନାମର କଥା ବଡ଼ ଜାଣ ॥
ଗୋପାଳ କୁଳେ ଏ ମହାନ୍ତ । ଅଭ୍ର ଯେତେକ ଦେବେ ଭୃତ୍ୟ ॥
ଯୁଗୁ ଏ ଅଚ୍ୟୁତ ଅନନ୍ତ । ଅଧିକାରୀ ସେ ଗ୍ରାମ ଏ ତ ॥
ମହାନ୍ତ ଏହି ବାରଜଣ । ସକଳ ଦେଶେ ଏ ପ୍ରମାଣ । ୧୦୦ ।
ଅଙ୍ଗାରଠାରୁ ଯେ ହୋଇଲା । ଆମ୍ଭର ଯୁଗୁ ଘଣ ହେଲା ॥
ଏଥିରେ ଗ୍ରାମ ଅଧିକାରି । ଗୋପାଳେ ଆମ୍ଭଙ୍କୁ ଯେ ବଡ଼ ॥
ଏମାନେ ଖୋଳ କରତାଳେ । ଭ୍ରମି ଯେ ପୃଥିବୀ ମଣ୍ଡଳେ ॥
ଧନ ଘଣକୁ ଆଶା ନାହିଁ । ତୋ ମାନଙ୍କୁ ସ୍ନେହ ନାହିଁ ॥

---

୧୦୦-୨—ଭ୍ରମଣ—ଗ, ଖ ।

ପୁରୁଷୋତ୍ତମ ସେଥୁ ବନ୍ଧ । ବଦରୀ ବୃନ୍ଦାବନ କନ୍ଦ ॥
ନନ୍ଦଆ ସମଲଗଡ଼ରେ । ଭ୍ରମିଲେ ଅନେକ ଦୁଃଖରେ ॥
ଅନନ୍ତପୁର ଯାଜ ଦେଶେ । ଅନେକ ବୁଲି ପରବାସେ ॥
ଏବେ ମିଳିଲେ ଆମ୍ଭଠାରେ । ଗୁରୁ ପରମ ଗୁରୁ ଘରେ ॥
ଉତ୍ଥାନ ପବନ ମଥୁରା । ମଧୁ ମାଧୁରୀ ନରହରି । ୧୦୯ ।
ସେହି ଛଡ଼ ନପୁଂସକ ଦେହ । ସେହି ଗଣ ବୈରାଗ ସେନେହ ॥
ମୁକୁନ୍ଦ ବାଳକ ଅନନ୍ତ । ଯାଦବ ବସ୍ତ୍ର ଆନନ୍ଦ ତ ॥
ସେହି ଛଡ଼ ସଂସାର ଅବୋଧ । ସେହି ଅଂଶେ ରହିବେ ସଂସାରି ॥
ସେହି ଅଂଶେ ଗୋପାଳେ ଭଜିବେ । ଖୋଳ ଯେ କର୍ତ୍ତାଳ ଶିଖିବେ ॥
ସେହିତେଜ ମନ୍ତ୍ର ଏ ସଙ୍ଗରେ । ଘୋଷଣ କରିବେ ମୁଖରେ ॥
ଦକ୍ଷିଣ ପଶ୍ଚିମ ଗୋପାଳ । ମୁକୁନ୍ଦ ଅଂଶରେ ଏ ମେଳ ॥
ପୂର୍ବ ଉତ୍ତରେ ଗୋପ ସୁତ । ଅନନ୍ତ ଅଂଶେ ଏ ଭକତ ॥
ଆନନ୍ଦ ଗୋବିନ୍ଦ ପବନ । ଉତ୍ଥାନ ମଧୁ ପଞ୍ଚଜନ ॥
ମୁକୁନ୍ଦ ମିଶି ଷଡ଼ ଭାଇ । ଏ ଗଡ଼ [illegible] ॥
ଅନନ୍ତ ଯାଦବ ବାଳକ । ମଥୁରା ବୃନ୍ଦାବନ ଜନ ॥
ଏ ଷଡ଼ ଅନନ୍ତର ଭାଇ । ମାତୃସୀ ପିଉସୀ ଲେଖାଇ । ୧୧୦ ।
ଏ ପଞ୍ଚ ଯୁଗରେ ଅମର । ଜନ୍ମେ ଜନ୍ମେ ସେ ଜାତେ ସାର ॥
ଅନନ୍ତ ଯୁଗରେ ଏ ପୁଣ । ରହିଲେ ଅନନ୍ତ ସଙ୍ଗେଣ ॥
ସତ୍ୟରେ ନାରାୟଣ ମିଶି । ରହିଲେ ପୁଣ ହୋଇ ଋଷି ॥
ତ୍ରେତାରେ ବାନର ହୋଇଲେ । ଶ୍ରୀରାମ ସଙ୍ଗେ ଲୀଳା କଲେ ॥
ଦ୍ୱାପର ଗୋପରେ ଗୋପାଳ । ହୋଇଣ ରାମକୃଷ୍ଣ ମେଳ ॥
ଓଡ଼ ରାଷ୍ଟ୍ରରେ ଜାତ ହୋଇ । ଚୈତନ୍ୟ ରୂପକୁ ସେ ଧାଇ ॥
ବଉଦ ରୂପକୁ ଅବୋଧ । ଏ ଖୋଳ କରତାଳ ଧରି ॥
ହୁଙ୍କାର କରିବା ନମନ୍ତ୍ରେ । ଆଜ୍ଞା ସେ କଲେ ଜଗଦ୍ଗୁରୁ ॥
ଚୈତନ୍ୟ ପ୍ରଭୁ ନୀଳାଚଳେ । ରହିଲେ ଚୈତନ୍ୟ ମଣ୍ଡଳେ ॥
ଆବର ସେ କଲେ କରୁଣା । ଓଡ଼ ରାଷ୍ଟ୍ରରେ ବଡ଼ ଜଣା ॥

ବହୁତ କଲେ ପରଶଂସା । ଧନ୍ୟ ତୁମ୍ଭର ଗୋପ ଅଂଶ ॥
ସେ ଖୋଳ କରତାଳ ଦେଇ । ଅନ୍ତର ହୋଇଲେ ଗୋସାଇଁ ॥
ଭଜନ କୁଟୀରେ ବସିଲେ । ଏ ପୁଟେ ଗୃହକୁ ଅଇଲେ ॥
ଗୋପ ପୁତ୍ରଙ୍କୁ ଏତେ କହୁ । ଭୋଜନ କଲେ ପଞ୍ଚସାଇଁ ॥
ଯେତେ ଗୋପାଳେ ସଙ୍ଗେ ଥିଲେ । ସମସ୍ତେ ଭୋଜନ ଯେ କଲେ ॥
ବୈଶାଖ ଦ୍ୱିତୀୟାର ଦିନ । ମୁକୁନ୍ଦ ଉତ୍ସବ ଭୋଜନ ॥
ଅଚ୍ୟୁତ ପଚ୍ଛିଲେ ଯେତେ । ସନ୍ତୋଷ ହୋଇଲେ ସମସ୍ତେ ॥
ତୁମ୍ଭେ ଯେ ଗୃହ କରୁଥିବ । ଅତିଥି ଅଇଲେ ପୂଜିବ ॥
ଇତିହାସରେ ପରମାଣ । ରାମାୟଣ ଭାଗବତେଣ ॥
ବେଦରେ ପରମାଣ ଜାଣ । ଅନ୍ନରୁ ନାହିଁ ବଡ଼ ଜଣ । ୧୪୦ ।
ଅଂଗରେ କ୍ଷୀର ଅନ୍ନ ଥୋଇ । ଜୀବକୁ ପିଣ୍ଡରେ ବାନ୍ଧଇ ॥
ଅନନ୍ତ ଯୁଗରେ ଅନନ୍ତ । କ୍ଷୀର ରଖିଣ ଦେହବନ୍ତ ॥
ସତ୍ୟ ଯୁଗରେ ମୁନିମାନେ । ପୁଷ୍ଟ ସାଗରେ ବର୍ତ୍ତି ଦନେ ॥
ତ୍ରେତୟା ଯୁଗେ ରଘୁନାଥ । ଫଳ ମୂଳରେ ବର୍ତ୍ତିଲେ ତ ॥
ଦ୍ୱାପରେ ଅମୃତ କ୍ଷୀରରେ । ବର୍ତ୍ତିଲେ ଗୋପପୁର ନରେ ॥
କଳିରେ ଅନ୍ନ କ୍ଷୀର ସାର । ମିଳଇ ପୁପୁଣ୍ୟ ଯେ ନର ॥
ଆପଣେ ଭକ୍ଷି ଭକ୍ଷାଇବ । ଯମ ପାଞ୍ଜିରେ ଲେଖା ହୋବ ॥
ଅତିଥି ନିରାଶ୍ରୀ କରଇ । ପୋଡଣ ବାଧ ରଖିଥାଇ ॥
ମୂର୍ଖ ପଶୁ ଯେ ଦାସ ନରେ । ରଖିଣ ଥାଇ ଯେଉଁ ଘରେ ॥
ଅଗ୍ନି ଯେ ପୂର୍ଣ୍ଣି ରାଜାଠାରେ । ଦୁର୍ଭିକ୍ଷ ନିର୍ବିପାକରେ ॥
ଅବଶ୍ୟ ଧନ ନାଶ ଯାଇ । ଧର୍ମ ପଥ ତ ଛାଡ଼ି ଯାଇ ॥
ଗଲେଣ ଯମର ଡଗରେ । କୃପଣ ଲୋକଙ୍କ ଉପରେ ॥
ନରକେ କିରନ୍ତ ଯେ ବାସ । ଅନେକ କଲ୍ପନ୍ତ ଜୀଂଘାସ ॥
ମଞ୍ଚ ମଣ୍ଡଳେ ଜାତ ହୋଇ । ଜୀବରେ ଦୟା କଲେ ନାହିଁ ॥
ନାସିକା ପଥେ ନାମ ଧୂଳି । ଜପ ନ କଲୁ ତୁ ଯେ ବାଇ ॥
ନୟନେ ରୂପ ନ ଦେଖିଲୁ । ଶ୍ରବଣେ ଗୁଣ ନ ଶୁଣିଲୁ ॥

ମନ୍ତ୍ର ନ ଜପିଲୁ ମୁଖରେ । ନାମ ନ ଧରିଲୁ ମନରେ ॥
ସ୍ୱାର୍ଥେ ଜୀବନ ହାରିଲୁ । ଧନ ମୋହରେ ଜଡ଼ିଥିଲୁ ॥
ଧନ ଜନ ଏ ପରିମାନ । ଗୋବିନ୍ଦ କୋଠ ବୋଲି ଜାଣ ॥
କ୍ଷେତ୍ର ଯେ ଥାନ୍ତି ନାଶ ଯାନ୍ତି । ଥିଲା ବେଳରେ ଯେ ଦିଅନ୍ତି ॥
ସେ ପୁଣି ଦିଅନ୍ତି ସଂସାର । ଅଚ୍ୟୁତ କହେ ଏହୁ ସାର । ୧୬୧ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା ଚତୁର୍ଥଖଣ୍ଡେ ଅନ୍ନଫଳ
କଥନେ ନାମ ଦ୍ୱିତୀୟ ପଟଳ ।

---

## ତୃତୀୟ ପଟଳ

ମୁକୁନ୍ଦ ଅନନ୍ତ ଗୋପାଳ । ନମସ୍ତେ ଗୁରୁ ପାଦତଳ ॥
ମନ୍ତ୍ରମାନଙ୍କ ବୀଜ କନ୍ଦ । ଅଟ୍ଟରେ ଫିଟିବ ସନ୍ଦେହ ॥
ଶୁଣ ସୁବୁଦ୍ଧି ଗୋପ ସୁତ । ମୁକୁନ୍ଦ ଉଚ୍ଚାନ ଅନନ୍ତ ॥
ଯାଦବ ପବନ ବାଳକ । ମଧୁର ବଂଶ ଆନନ୍ଦକ ॥
ଗୋପକୁଳର ହେ ମହନ୍ତ । ପଣ୍ଡିତ ସାର ଯନ୍ତ୍ର ମନ୍ତ୍ର ॥
ଯନ୍ତ୍ରରେ ମନ୍ତ୍ର ଗୁନ୍ଥିଲେଣ । ମନ୍ତ୍ରକୁ ତନ୍ତ୍ରରେ ଭେଦଣ ॥
ତେବେ ଶିଷ୍ୟର ଜନ୍ମ ବୋଧ । ଯେ ଗୁରୁ ଜାଣେ ତତ୍ତ୍ୱବୋଧ ॥
ବୋଧ ଗୁରୁ ଯେବେ ମିଳଇ । ଶିଷ୍ୟ ଯେ ତେବେ ବୋଧ ପାଇ ॥
ନିଧନେ ନିଧନେ ସଙ୍ଘାତ । ମୂର୍ଖ ମୂରୁଖ ଶାସ୍ତ୍ରମତ ॥
ଜଡ଼କୁ ଜଡ଼ ଯେସନେ ଭେଟ । ଅନ୍ଧେ ଅନ୍ଧେଣ ପନ୍ଥ ମିଶା ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ଭେଦ । ଅଷ୍ଟପ୍ରହରର ରସ ବନ୍ଧ । ୧୧ ।
ଗୁପ୍ତ ଅବାଡ଼ ଜ୍ୟୋତି ଧ୍ୟାନ । ସମାଧି ଲକ୍ଷ୍ୟେ ଅଷ୍ଟ ଘେନ ॥
ଏ ଅଷ୍ଟରସ ନ ଜାଣିଲେ । ଶିଷ୍ୟ ନ କରଇ ଯେ ଭଲେ ॥
ଏ ଅଷ୍ଟରସ ନ ଜାଣିଣ । ଶିଷ୍ୟ କରଇ ମୁଁ କାରେଣ ॥

ଗୁରୁ ଶିଷ୍ୟ ଯେ ନଦୀ ଜଳେ । ବସନ୍ତି ପାଷାଣ ଯେ ସ୍ଥଳେ ॥
କେବଳ ଅନ୍ନ ବସ୍ତ୍ର ଖାଇ । ଶିଷ୍ୟର ଗୁହେ ବୁଲୁଥାଇ ॥
ଅନ୍ତାମ ନର୍କ ପ୍ରାପ୍ତେ ଶିଷ୍ୟ । ସେ ଶିଷ୍ୟ କଲ୍ପ ହୁଏ ନାଶ ॥
ଏଣୁ ଏ ଅଷ୍ଟଗୁଣ ଦୋଷ । ଉତ୍ତମ ଗୁରୁ ପାଦେ ରସ ॥
ଅନ୍ନ ବସନ ଅଷ୍ଟରତ୍ନ । ଗୁରୁଙ୍କଠାବେ ଦେବ ଯତ୍ନ ॥
ଅମାବସ୍ୟା ସଙ୍କ୍ରାନ୍ତି ତିଥି । ପୌର୍ଣ୍ଣମୀ ଏକାଦଶୀ ତିଥି । ୨୦ ।
ଏ ଦିନମାନଙ୍କରେ ପୁଣ । ଗୁରୁ କୃଷ୍ଣନ୍ତି ଯା ଗୁଣେଣ ॥
ଏ ତିଥିମାନଙ୍କେ ବୈଷ୍ଣବ । ଅଥବା ବ୍ରାହ୍ମଣେ ପୂଜିବ ॥
କିମ୍ବା କହିବା ତାର ଗତି । ଶ୍ରଦ୍ଧାଯେ ଅନ୍ତଥି ପୂଜନ୍ତି ॥
ଏ ଚନ୍ଦ୍ର ମୁଖଙ୍କୁ ବଚନ । ଶୁଣିବ ପୁଣ୍ୟ କଥାମାନ ॥
ଗୁରୁଙ୍କ ପୂଜା ସଦା କର । କୃଷ୍ଣଙ୍କ ପୂଜା ଶ୍ରେଷ୍ଠ ସର ॥
ବୈଷ୍ଣବ ଭୋଜନ ପୂଜାର । ସଦେଶ ପୂଜାଙ୍କୁ ଏ ସାର ॥
ବ୍ରାହ୍ମଣ ପୂଜା ଯେ କରଇ । ବ୍ରହ୍ମପୂଜାଙ୍କୁ ଶ୍ରେଷ୍ଠ ହୋଇ ॥
ଶୁଣ ହୋ ଗୋପସୁତମାନେ । ମନ୍ତ୍ର ବସଇ ଯେତେ ସ୍ଥାନେ ॥
ସନ୍ତ ମନ୍ତ୍ରର ସ୍ଥାନ ଚିହ୍ନ । ଗୁରୁ ବଚନ ମନେ ଘେନ ॥
ଅବାର ଅଣକ୍ଷର ମୂଳ । ଦକାର ଏକାକ୍ଷର ସ୍ଥଳ । ୩୦ ।
ଅକାର ଶ୍ୟାମ ପଞ୍ଚାକ୍ଷର । ଅର୍କାଙ୍ଗ ତାରକ ମନ୍ତ୍ରର ॥
ଅକାର ହରେ ରାମ ମନ୍ତ୍ର । ଏରୂପେ ବସନ୍ତି ଯେ ସନ୍ତ ॥
ଏଥିରେ ପଞ୍ଚ ମାଳା ଦେବ । ଯମନ୍ତ୍ର ନାମ ଉଚ୍ଚାରିବ ॥
ଯାହା ଡାକିଲେ ଚନ୍ଦ୍ର ମିଳେ । ସ୍ଥାବର ଆଦି ଗୁନ ଅଂଶେ ॥
ସ୍ୱର୍ଗ ମର୍ତ୍ତ୍ୟ ଯେ ପାତାଳରେ । ଯେତେକ ନାମ ଏ ସଂସାରେ ॥
ଏ ପଞ୍ଚ ମନ୍ତ୍ରେଣ ମିଶିବ । ଏ ପଞ୍ଚ ମନ୍ତ୍ରଙ୍କ ବୃକ୍ଷ ଭ ॥
ଅଣ ଅକ୍ଷର ଏକାକ୍ଷର । ତାରକ ଶ୍ୟାମ ପଞ୍ଚାକ୍ଷର ॥
ହରେ ରାମ ଯେ ମନ୍ତ୍ର ପଞ୍ଚ । ଏ ମନ୍ତ୍ରମାନଙ୍କରେ ଉଚ୍ଚ ॥
ଅଣ ଅକ୍ଷର ମୂଳ ହୋଇ । ଏକା ଅକ୍ଷର ଅଙ୍କୁରଇ ॥
ଶ୍ୟାମ ଯେ ପଞ୍ଚାକ୍ଷର ଡାଳ । ତାରକ ମନ୍ତ୍ରମାନେ ଫଳ ॥

ଦରେ ଗ୍ରାମ ଯେ ଫଳ ହୋଇ । ଏ ବୃକ୍ଷ ଯେ ନାନ ହୋଇ ॥
ସେହି ଜନକୁ ବୋଲି ଦାସ । ବନ୍ଧନ ସେହି ଯେ ମନାଶ ॥
ଏହାଙ୍କୁ ବଇଷ୍ଣବ କହି । ଏ ଜନ ବୈରାଗ୍ୟ ଅଟଇ ॥
ଏହା ଜାଣନ୍ତି ଯେଉଁ ନର । ମହନ୍ତ କୁଳରେ ସେ ସାର ॥
ଜାଣିଲେ ସନ୍ଥ ସାଧୁ ବୋଲି । ସୁଜନ ସଙ୍ଗରେ ଏ ସତ ॥
ମହନ୍ତ ଜନ ସେ ଅଟନ୍ତି । ଏହା ନ ଜାଣି ଦାସ ହୋନ୍ତି ॥
ଧାନରେ ଅଗାଡ଼ି ଯେସନ । ଗାବରେ ବାଛୁରି ଗାବମାନ ॥
ମନୁଷ୍ୟେ ଜପୂଜିକ ଅଂଶ । ଜନରେ ଦରିଦ୍ର ମନୁଷ୍ୟ ॥
ନଷ୍ଟଲେ ଜନ୍ମ ତାର ଯାଇ । ଯେ ତତ୍ତ୍ୱ ଗୁରୁ ନ ସେବଇ ॥
ଶ୍ରୀ ଭାଗବତେ ଏ ପ୍ରମାଣ । ଶ୍ରୀ ଭଗବତ ଗୀତା ଜାଣ ॥ ୫୦ ।
ଜ୍ଞାନୀ ସେବିଲେ ଜ୍ଞାନ ପାଇ । ଭଗନ୍ତ ଜ୍ଞାନ ଦ୍ୟନ୍ତି କହି ॥
ଉତ୍ତମ ଗୁରୁ ପାଦେ ସେବା । ଭଗନ୍ତ ପଥ ବତାଇବା ॥
ବେଦରେ ଏ କଥା ପ୍ରମାଣ । ଯେ କର୍ମ କରେ ସେ ଫଳେଣ ॥
ଯେ ବୀଜ ଯେ ପୁଣ ବୁଣଇ । ସେହି ବୀଜ ଯେ ପୁଣ ଜାଇ ॥
ଏଣୁ ସୁବୀଜ ଗୁରୁ ଖୋଜ । ଅଗାଡ଼ି ଧାନେ କସ କାର୍ଯ୍ୟ ॥
ଗୁରୁକି ଗଢର ପୁରୁଷ । ଗୁରୁ କଲ୍ୟାଣେ ଧନ ବଂଶ ॥
ଗୁରୁ କଲ୍ୟାଣେ ରାଜ୍ୟ ଶିଷ୍ୟ । ଗୁରୁ ଦର୍ଶନେ ପାପ ହରେ ॥
ଗୁରୁଙ୍କୁ କସ ଦେବା ତୁଳ୍ୟ । କୃଷ୍ଣର ପରେ ଗୁରୁ ଭଲ ॥
ଆଉ କ ଦ୍ରବ୍ୟ ସଂସାରରେ । ତୁଳ୍ୟ ଅଛଇ ତ୍ରିପୁରେ ॥
ଜ୍ୟୋତିଜ ଗୁରୁ ବୋଲି ଜାଣ । କୃଷ୍ଣର ଏଥି ଲସ୍ତ ପୁଣ । ୬୦ ।
ଗୁରୁ ଦେଖାନ୍ତି ଜ୍ୟୋତ ସ୍ଥାନ । ଜ୍ୟୋତରୁ କେତେ ରୂପମାନ ॥
ସେ ଅଂଶୁ ଜନମ ହୁଅନ୍ତି । ସେ କଥା କହି ନ ପାରନ୍ତି ॥
ଯେବେ ସେ ତତ୍ତ୍ୱ ଗୁରୁ ପାଇ । ସେ ସ୍ଥାନ ଦିଅନ୍ତି ଚହ୍ନାଇ ॥
ଯେ ଗୁରୁ ସେ ସ୍ଥାନ ଚହ୍ନାଇ । ତାହାଙ୍କୁ ତତ୍ତ୍ୱ ଗୁରୁ କହି ॥
ଏ ପଞ୍ଚ ମନ୍ତ୍ର ଯେ ଜାଣଇ । ଏହାଙ୍କୁ ସଦଗୁରୁ କହି ॥
ଏହା ଖୋଜିଣ ହେବ ଶିଷ୍ୟ । ଫିଟିବ ଭବ ବନ୍ଧ ଫାଶ ॥

ମତବ ନୌକାର ଲକ୍ଷ୍ୟ କରି । ଭବ ସଂସାରୁ ଯିବ ତରି ॥
ଭବ ସାଗରେ ନୌକା ନାବ । ମନ୍ତ୍ର ଯେ କେରୁଆଲ ଭାବ ॥
ଧୀବର ନୌକାର ମଧ୍ୟେ ରୂପ । ସମାଧି ଲକ୍ଷ୍ୟର ସ୍ୱରୂପ ॥
ଶ୍ରଦ୍ଧା ଯେ ପଟା ବୋଲି ଜାଣ । ଅବାଡ଼ ପାଣିବୃହା ଜନ୍ତୁ ॥
ରସ ଗୁଣ ଯେ ନଣ୍ଡା ହୋଇ । ତନ୍ତ୍ର ଯେ ପଟା ଖମ୍ଭ କହି ॥
ଯନ୍ତ୍ର ଯେ ନାବରେ ସମିଧ । ଭକ୍ତି ନାବ ଯେ ଅଷ୍ଟବନ୍ଧ ॥
ଏ ନାବ ଖୋଜି ଭରୁଁ ତର । ଭବରେ ବୁଡ଼ିଣ ନମର ॥
ବହୁତ ଜନ୍ମ ଭାଗ୍ୟ ଥାଇ । ଏ ଗୁରୁ ତାହାକୁ ମିଳଇ ॥
ସହସ୍ର ଗ୍ରାମେ ସମ୍ଭ ଦେଶେ । ଥାନ୍ତି ସେ ଏକା ବା ପୁରୁଷେ ॥
ଦ୍ୱନ୍ଦୀ ଛନ୍ଦୀ ଯେ ବାଦୀ ଜନ । ଭେଖ ବନ୍ଧଣ ଦାସମାନ ॥
ପଢ଼େ ଅଧେ ବା ଶିକ୍ଷା କରି । ଗୁରୁ ହୁଅନ୍ତି ବର୍ଣ୍ଣେ ଧରି ॥
ସଂସାରେ ବହୁତ ଯେ ଅଂଶ । ଏଥିରେ ପ୍ରୟୋଜନ କିସ ॥
ନାବରେ ବସାଇ କୂଳରେ । ଲଗାଇ ନ ପାରେ ଧୀବରେ ॥
ଧୀବର ଜନ ନଦୀ ମଧ୍ୟେ । ବୁଡ଼ି ମରନ୍ତି ଜଳ ମଧ୍ୟେ । ୮୦ ।
ତୁମ୍ଭେ ଯେ ଭାଗ୍ୟ କରିଥିଲ । ତେଣୁ ଗୁରୁଙ୍କୁ ଯେ ଭେଟିଲ ॥
ରାମ ବରଜ ଦାସ ମୋର । ସେବିଲି ଆମ୍ଭର ସଦ୍ଗୁର ॥
ଦାରା ପୁତ୍ର ଯେ ଧନ ପୁଣ । ତେଜିଣ ରହିଲି ପାଦେଣ ॥
ତୁମ୍ଭେ ତାହାଙ୍କୁ ସେବା କଲ । ପରମ ଗୁରୁଙ୍କୁ ଭେଟିଲ ॥
ଏ ଗ୍ରନ୍ଥ ତୁମ୍ଭର ଭାଗ୍ୟକୁ । ଲେଖିଲି କୃଷ୍ଣ କରୁଣାରୁ ॥
ତୁମ୍ଭେ ଶୁଣିଲ ଗାଇ ହେଲ । ତୁମ୍ଭର ଅଂଶେ ଥିବେ ଭଲ ॥
ଏକ ଏକ ବା ଶ୍ରଦ୍ଧା କରି । ଭବ ସଂସାରୁ ଯିବେ ତରି ॥
ଯେ ପର ସ୍ତ୍ରୀ ଲାଜ ହରିବ । ଏ ଗ୍ରନ୍ଥ ତାକୁ ନ କହିବ ॥
ଯେ ମଦ୍ୟ ଧୂଆଁ ଯେ ଖାଇବ । ଏ ପାଠ ତାକୁ ନ କହିବ ॥
ଗଞ୍ଜା ବଦରଙ୍ଗି ଖାଇ । ଅପୁଆ ଯେ ଜନ ଭୁଲାଇ । ୯୦ ।

ବୈରାଗ୍ୟ ପଥ ଯେ କେମନ୍ତ । ଏ କଥା କହିବା ଆମ୍ଭେ ତ ॥
ଶୁଣ ହୋ ବାରଷିଆ ପୋଏ । ବୈରାଗ୍ୟ ମନୁଷ୍ୟ ଯେ ହୋଏ ॥
ବୈରାଗ୍ୟ ଗୁଣ ପରକାର । ମନୁଷ୍ୟ ମଧ୍ୟେ ସେ ତ ସାର ।୨୦॥
ସଦାନନ୍ଦ ବୈରାଗୀ ଏ କହି । ସଂଯୋଗୀ ବୈରାଗୀ ଯେ ଦୁଇ ॥
ଊର୍ଦ୍ଧ୍ୱବାହୁ ବୈରାଗୀ ଜନ । ମନ ବୈରାଗୀ ଗୃହେ ଯେନ ॥
ଏ ଗୁଣ ପଥେ ଯେ ଗମନ୍ତି । ତାହାଙ୍କୁ ନାହିଁ ଦୁଃଖ ଭ୍ରାନ୍ତି ॥
ଶୀତ ଲାଗିଲେ ଅଗ୍ନି ତଟରେ । ଶୀତ ପଳାଇ ଯେ ହୃଦରେ ॥
ଭୋକରେ ଅନ୍ନକୁ ଭକ୍ଷିଲେ । କ୍ଷୁଧା ପଳାଇ ଯେସନ୍ତେ ଭଲେ ॥
ଏଣୁ ବୈରାଗ୍ୟ ପଥ ସାର । କରନ୍ତି ସୁପୁରୁଷ ନର ॥
ନିର୍ବୁଦ୍ଧି କୁପୁରୁଷମାନେ । ବୈରାଗ୍ୟ ନ ଘେନନ୍ତି ମନେ ॥
ଏ ଗୁଣ ପଥ ଯେଉଁ ଭାବ । ଏ କଥା କହ ଗୁରୁଦେବ ॥
ଶୁଣ ହେ ମୁକୁନ୍ଦ ସୁବୁଦ୍ଧି । କହିବୁ ତହିଁର ଯେ ବିଧି ॥
ଶୁଣ ହେ ଅନନ୍ତ ମହାନ୍ତ । କହିବା ତହିଁର ଯେ ମତ ।୩୦।
ସଦାନନ୍ଦ ବୈରାଗ୍ୟ ଲକ୍ଷଣ । ଦଶ ବା ବାର ବରଷେଣ ॥
ଗୃହ ତେଜିଣ ସେ ଗମନ । ରହିବ ଶ୍ରୀଗୁରୁ ଭବନ ॥
ବାରବରଷ ଗୁରୁ ସେବା । ମନ୍ତ୍ର ଯନ୍ତ୍ର ତନ୍ତ୍ର ଶିଖିବା ॥
ଅଷ୍ଟ ପ୍ରହର ସେବାମାନ । ରାଧା କୃଷ୍ଣଙ୍କ ଗୁଣଗାନ ॥
ରାତ୍ର ଦିବସ ସେବାଦଣ୍ଡ । କୋଠ ଗୁମ୍ଫା ସମାଧି ପିଣ୍ଡ ॥
ଅବାଡ଼ ଅଷ୍ଟଗୁଣ ସାଧି । ଗୁରୁ ସେବାରେ ଯେତେ ବିଧି ॥
ସାଧନେ ପକ୍କା ଯେବେ ହେବ । ଗୁରୁଙ୍କ ମେଲାଣି ମାଗିବ ॥
ଦକ୍ଷିଣ ଦିଗେ ଚାଲିଯିବ । ଶ୍ରୀନୀଳକନ୍ଦରେ ରହିବ ॥
ସେତୁ ବନ୍ଧକୁ ଚାଲିଯାଇ । ଦକ୍ଷିଣ ପଶ୍ଚିମେ ଫେରଇ ॥
ବଦରି ଶ୍ରୀ ବୃନ୍ଦାବନରେ । ଅଯୋଧ୍ୟା ଗଙ୍ଗା ନଦୀତଟରେ ॥
ନଦିଆ ରାଜକେନ୍ଦ୍ରୁ ଦେଶ । ସମଲପୁରୁ ପୂର୍ବେ ଆଶ ।୪୦।
ସ୍ୱେକାମ୍ବର ବନ ଦର୍ଶନ । ମିଳିବ ଜଳ ସ୍ଥଳ ସ୍ଥାନ ॥
ବାର ବରଷ ବୁଲି ମୁହିଁ । ଗୁରୁ ଭୁବନେ ଆସି ରହି ॥

ସେବା ପୂଜା ସେବ ମିଳିବ । ଦେଇଣ ପାଦେ ଓଲଗିବ ॥
ଗୁରୁଙ୍କୁ ମେଳଣି ମାଗିଣ । ରହିବ ସୁପୁଣ୍ୟ ସ୍ଥାନେଣ ॥
ଉତ୍ତମ ପୁଣ୍ୟ ସ୍ଥାନ କରି । ଶ୍ରୀମୂର୍ତ୍ତି ରୂପ ସ୍ଥାପିକରି ॥
ଔଷଧ ଫଳ ପୁଷ୍ପମାନ । ବୃକ୍ଷ ରୋପିବ ସେ ଯତନ ॥
ରନ୍ଧନ କରଣ ସଜନ । ରଖିବ ଶ୍ରୀମୂର୍ତ୍ତି ସ୍ଥାନେଣ ॥
ପ୍ରସାଦ ଉପହାର ଯେତେ । ଖଟୋଇ ଦେବ ସେ ସୁଚିତେ ॥
ବୈଷ୍ଣବ ବ୍ରାହ୍ମଣ ଅତିଥି । ସଂସାରେ ଦୁଃଖୀ ଯେବା ଥାନ୍ତି ॥
ସେହିମାନଙ୍କୁ ଅନ୍ନ ଦାନ ଦେବ । ସଂସାର ସୁଖ ସେ ପାଇବ ॥
ଲୋକରେ ଇନ୍ଦ୍ରିୟ ସଙ୍ଗ ନାହିଁ । ଯଥାର୍ଥ ବୈରାଗୀଟି ଏହି ॥
ସମାଧି ଯେ ଜନ ସାଧଇ । କ୍ଷଣେ ଦଣ୍ଡେ ବା ନ ମିଳଇ ।
ଆତ୍ମାକୁ ଯେ ଜନ ସାଧଇ । ସାଧୁ ସଙ୍ଗମ ତାର ହୋଇ ॥
ଶ୍ରୀଭାଗବତେ ଏ ପ୍ରମାଣ । ଶ୍ରୀଭଗବତ ଗୀତାଦ୍ୱେଣ ॥
ଏହା କହନ୍ତି ଯେଉଁ ପ୍ରାଣୀ । ସଂସାର ସୁଖ ଭୁଞ୍ଜେ ପୁଣି ॥
କୁବୁଦ୍ଧି ପ୍ରାକୃତ ଲୋକମାନେ । ସ୍ତ୍ରୀଙ୍କି ଆବୋରି ଯତନେ ॥
ଇନ୍ଦ୍ରୀ ପ୍ରବଳେ ସ୍ତ୍ରୀଙ୍କ ସଙ୍ଗ । ରାତ୍ର ଦିବସ ରତିରଙ୍ଗ ॥
ରତିରୁ ପୁତ୍ର ଜାତ ହୋଇ । ପୁତ୍ର ଦେଖିଣ ମୋହଯାଇ ॥
ରାତ୍ର ଦିବସେ ଛଟପଟ । ଅରଜି ପୋଷୁଥାଇ ପେଟ ।୭୦।
ବନ୍ଧୁ ବାନ୍ଧବମାନ କରେ । ଧନ ହରାଇ ଦେଇ ପାରେ ॥
ଗୁରୁ ବୈଷ୍ଣବ ନ ସେବଇ । ଧନ ହରାଇ ସଞ୍ଚୟଇ ॥
କାଳେ ସେ ପୁତ୍ର ନାଶ ଯାଇ । ଦାରା ଦୁହିତା ସେ ମରଇ ॥
ଦାସ ଦାସୀ ସେ ଛାଡ଼ିଯାନ୍ତି । ଗ୍ରାମ ପଣ୍ଟେ ନ ରଖନ୍ତି ॥
ସ୍ୱାର୍ଥେ ଲଭିଲେ ମରଣ । କୁବୁଦ୍ଧି ଜନ ଏ ଲକ୍ଷଣ ॥
ସୁବୁଦ୍ଧି ଯେଉଁ ଜନମତ । ଯଥାର୍ଥ ବୈରାଗୀ ହୁଅନ୍ତି ॥
ସେହି ଲକ୍ଷଣ କହେ ଧର । ଶୁଦ୍ଧ ତନୁ ନପୁଂସକ ଶରୀର ॥
କାମ କଳନା ଜନ୍ମ ନାହିଁ । ଜନ୍ମିଛି ଯୋଗୀ ଅଙ୍ଗ ହୋଇ ॥
ଉଦ୍ଧାନ ପବନ ମଧ୍ୟ । ବାଳା ବୃନ୍ଦାବନ ମାଧ୍ୟ ॥

ଏ ଛଡ଼ ଜାତି ବଇରାଗ । ଜନ୍ମରେ ଅଣି ଅଛ ସ୍ୱାଗ ।୭୦।
ଶୁଣ ସନ୍ତୋଷ ସଙ୍ଗ ଗୋପ । କହିବା ସଂଯୋଗୀ ସ୍ୱରୂପ ॥
ସଂଯମୀ ବୈରାଗ୍ୟ ଲକ୍ଷଣ । ଯେ ଅବା କରନ୍ତି ଧରଣ ॥
ଦାର ପୁତ୍ରଙ୍କୁ ଆରାଧନ୍ତି । ଧନ ସଞ୍ଚି ଆବରନ୍ତି ॥
ସେହି ଅବା ଅନ୍ନ କମାଇଣ । ଗୃହରେ ରନ୍ଧନ କରିଣ ॥
ଆପଣା କୁଟୁମ୍ବ ଲେଖିଣ । ତଣ୍ଡୁଳ ଦେବ ଯେ ଗଣିଣ ॥
କୁଣିଆ ଅଟେ ତାର ସାର । ଯତନେ ଦିଏ ତା ମୁଖର ॥
ବନ୍ଧୁଙ୍କୁ ଯେତୁ ସବେ ଦେଇ । ଆପଣେ ସେରୂପେ ଭୁଞ୍ଜଇ ॥
ଯେରୂପେ ଅତିଥି ବୈଷ୍ଣବ । ସେବା ପୂଜାରେ ଦଉଥିବ ॥
ବୈଷ୍ଣବ ଅତିଥି ମୁଖରେ । କୁଣିଆ ବନ୍ଧୁ ସହୋଦରେ ॥
ବସିଣ ଆନନ୍ଦ ନଗରେ । ମଙ୍ଗଳ କରିବ ଗୃହରେ ।୮୦।
ଗାଉଣା ବାଜେଣା କରିବ । ସୁଖରେ ଦିନ ହରୁଥିବ ॥
ମନ୍ତ୍ରକୁ ସ୍ମରଣ କରି । ଅଷ୍ଟ ପ୍ରହର ଚିତ୍ତେ ଧରି ॥
ଜ୍ୟୋତିକୁ କରୁଥିବ ଧ୍ୟାନ । ଅବାଡ଼ ଛାୟା ଦରଶନ ॥
ସଂଯୋଗୀ ବଇରାଗୀମାନେ । ଏହି ଲକ୍ଷଣ ଧରି ମନେ ॥
ଷଡ଼ ଗୋପାଳ ତୁମ୍ଭେ ପୁଣ । ଧର ହେ ଏହି ଲକ୍ଷଣ ॥
ସନ୍ତାନ ବୈରାଗୀ ସଂଯୋଗୀ । ବାର ଗୋପାଳ ହୋଇ ସଙ୍ଗୀ ॥
ପୃଥ୍ୱୀ ଭୂମି କରି ଆସ । ରହିବ ଆସି ନିଜ ବାସ ॥
ବୟସ ତ ହୋଇଛି ତୁମ୍ଭର । ନୋହିଛ ସ୍ତ୍ରୀ ସଙ୍ଗ ଆର ॥
ସ୍ତ୍ରୀ ଙ୍କର ତୁମ୍ଭ ହେତୁ ହେଉ । ଯୌବନ ଅଙ୍ଗେ ଶୋଭାପାଉ ॥
ତୁମ୍ଭର ରତି ଚିତ୍ତ ହେଲେ । ସଂଯୋଗେ ଗୃହ କର ଭଲେ ॥
ଶୁଣି ରହସ୍ୟ ନାଥମାନେ । ଏ କଥା ଧରିଥିବ ମନେ । ୯୧ ।
ମୁକୁନ୍ଦ ଅନନ୍ତ ଗୋବିନ୍ଦ । ବସୁ ଯାଦବ ହେ ଆନନ୍ଦ ॥
ସଂଯୋଗୀ ବଇରାଗୀ ଛଡ଼ । ସଂଯୋଗେ ଗୃହର ଝଗଡ଼ ॥
ଏ ଛଡ଼ ଅଂଶେ ବଂଶମାନେ । ସଂଯୋଗ ବୈରାଗ୍ୟ ବିଧାନେ ॥
ରହିବ କିଛି ଦିନ ଅଂଶ । ତୁମ୍ଭର ବଢ଼ିବ ଯେ ବଂଶ ॥

ତୁମ୍ଭଙ୍କୁ କ୍ଳେଶ ଦୁଃଖ ନାହିଁ । ତୁମ୍ଭ ପୁତ୍ରଙ୍କୁ ସୁଖ ହୋଇ ॥
ତୁମ୍ଭର ନାତିମାନେ ପୁଣ । କଷ୍ଟ ଭୁଞ୍ଜିବେ ସୁଖ ପୁଣ ॥
ପଣ ଅଣନାତି ତୁମ୍ଭର । ପଡ଼ିବେ ଦୁଃଖସ୍ରୋତ ଠାର ।୪୮।
ସଂଯୋଗୀ ବୈରାଗ୍ୟ ଲକ୍ଷଣ । ମୁକୁନ୍ଦ ଅନନ୍ତ ଦ ଜଣ ॥
ସଂଯୋଗୀ ବୈରାଗ୍ୟ ଲକ୍ଷଣ । ସଂଯୋଗେ ଗୃହ ଯେ କରଣ ॥
ପୁତ୍ରମାନେ ପାଳିଲେ ପୁଣ । ଗୃହ ପୁତ୍ରଙ୍କୁ ସମର୍ପଣ ॥
ସତନେ କୁଟୀରେକ କରି । ରହିବ କୁଟୁମ୍ବ ଆବୋରି ॥
ସମାଧି କରିବ ସାଧନ । ନିଷ୍ଟିନ୍ତ ହେବ ଯେ ଦନେଣ ॥
ସେବା ପୂଜା ପୁତ୍ର କରିବେ । ଆପଣେ ତାହା ଦେଖୁଥିବ ॥
ପୁତ୍ର କୁଟୁମ୍ବମାନେ ମିଳି । ସେବା କରିବ ଯେନ କେଳି ॥
ଶୁଣି ସଂଯୋଗ ବଇରାଗୀ । ମୁକୁନ୍ଦ ଅନନ୍ତ ସୁଭାଗୀ ॥
ତୁମ୍ଭେ ସୁଭାଗ୍ୟ ହେ ସୁଭୂତ । ଶୁଣ ବୈରାଗୀ ସୁଖ ରତ ॥
ତୁମ୍ଭର ମାତା ପିତା ଧନ୍ୟ । ତୁମ୍ଭର ଜୀବନ ତ ଧନ୍ୟ ॥
କେତେ କେତେ ବା ଗୋପକୁଳ । ଉଦ୍ଧାର ହେବେ ଗୋପବାଳ ॥
ଶିଖିବେ ଖୋଲ କରତାଳ । ତୁମ୍ଭର ବଂଶ ଯେ ଉଜ୍ଜ୍ୱଳ ॥
ସଂଯୋଗୀ ନୋହିଲେ ତୁମ୍ଭେ ତ । ମୃତ ହୁଅନ୍ତେ ଗୋପସୁତ ॥
କାହୁଁ ଶିଖନ୍ତେ ଖୋଲତାଳ । କା ସଙ୍ଗେ ହୁଅନ୍ତେ ଏ ମେଳ ॥
ଶୁଣି ସନ୍ତୋଷ ଗୋପସୁତ । କହିବା ଊର୍ଦ୍ଧ୍ୱବାହୁ ମତ ॥
ଶୁଣ ହେ ମୁକୁନ୍ଦ ମହନ୍ତ । କହିବା ଊର୍ଦ୍ଧ୍ୱବାହୁ ମତ । ୬୪ ॥
ଦାରା ଦୁହିତା ପୁତ୍ର ଧନ । ଆବୋରିଥିବ ଯେ ଯତନ ॥
ସୋଳଶ ବାର ବରଷରେ । ଗୃହ ଛାଡ଼ିବ ତତପରେ ॥
ଉତ୍ତମ ପୁଣ୍ୟ ନଦୀ ସ୍ଥାନ । ସେଠାରେ କରି ଗୃହମାନ ॥
ବିବିଧ ଫଳ ପୁଷ୍ପମାନ । ଶ୍ରୀମୂର୍ତ୍ତି ରଖିବ ଯତନ ॥
ଯେ ଅବା ଉପୁଜିବ ମହି । ସକଳ ଦେବ ସବୁକାହିଁ ॥
ବ୍ରହ୍ମ ଚଣ୍ଡାଳ ବୈଶ୍ୟ ଶୂଦ୍ର । ବୈଷ୍ଣବ ଅତିଥି ଦରିଦ୍ର ॥
ଏହାଙ୍କୁ ଦେବ ଅନ୍ନ ପାଣି । ସକଳ ଆତ୍ମା ଏକ ଜାଣି ॥

ଯେବେ ଏତେକ ନ ପାରିବ । ଶ୍ରୀ ଗୁରୁ ମଠରେ ରହିବ ॥
ଗୁରୁଙ୍କୁ କୃଷ୍ଣ ସରି କରି । ସେବା କରିବ ମନେ ଧରି ॥
ଗୁରୁଙ୍କ ଯେତେ ଦ୍ରବ୍ୟ ଥିବ । ଯତନ କରି ତା ରଖିବ ॥
ଉଦ୍ଧବ ବଇରାଗୀ ମତ । ଧଇଲେ ରାମଚନ୍ଦ୍ର ସୁତ । ୧୬୫ ।

ଗୋରୁ ମଇଷୀ ଗୃହପଣ । ଗୁରୁଙ୍କ ଯତନ ମନେଣ ॥
ଆମ୍ଭ ସେବାରେ ତତ୍ପର । ରହିଲେ ଆମ୍ଭର ସେବାର ॥
ଉଦ୍ଧବ ବଇରାଗ ଗୁଣ । ଧଇଲେ ରାମ ଗୋପ ପୁଣ ॥
ଦ୍ରବ୍ୟଙ୍କୁ ଧନ ପଣ ଦେଲେ । ଅମ୍ଭର ସେବାରେ ରହିଲେ ॥
ପୁଣ ପଚ୍ଚରୁଅଛୁ ଆମ୍ଭେ । ମନ ବୈରାଗ୍ୟ କହ ତୁମ୍ଭେ ॥
ଶୁଣ ହେ ଚନ୍ଦନ ଗୋପାଳ । କହିବୁ ତାହାର ଯେ ଫଳ ॥
ପୁତ୍ର କୁଟୁମ୍ବ ଅବା ଲୋକ । ମନ ସଙ୍ଗତେ ଥାନ୍ତି ମଙ୍କି ॥
ପୁତ୍ରଙ୍କୁ ଗୃହ ସମର୍ପିଣ । ମନେ ଭ୍ରମିଣ ଥାନ୍ତି ପୁଣ ॥
କେବେ ବା ତୀର୍ଥସ୍ଥାନେ ଥାନ୍ତି । କେହି ବା ଗୃହରେ ରହନ୍ତି ॥
ମନର ସୁଖ ଯେଉଁସ୍ଥାନେ । ରହନ୍ତି ନିଶ୍ଚିନ୍ତ ଯେ ମନେ ॥
ମନକୁ ଅମନେ ରଖନ୍ତି । ନିମନ୍ତେ କୃଷ୍ଣ ରୂପ ଚିନ୍ତି ॥
ଗୃହ ସ୍ଥାନରେ ନ ରହିଣ । ବନସ୍ତେ କରନ୍ତି ଭ୍ରମଣ ॥
ଶାଗ କନ୍ଦମୂଳ ବୁଧରେ । ଉଦର ପୋଷି ନିଶ୍ଚିନ୍ତରେ ॥
କେବେ ବା ଅନ୍ନ ଜଳ ଖାଇ । ମେଳା ମୌତ୍ରବେ ଖେଳୁଥାଇ ॥
କେବେ ବା ସୁଜନ ଗୃହରେ । ରହନ୍ତେ ମନର ସୁଖରେ ॥
ମନ ଭ୍ରମାଇ ଭ୍ରମୁଥାନ୍ତି । ମନ ସଙ୍ଗତେ ତାଙ୍କ ପ୍ରୀତି ॥
ମନରେ ବୈରାଗ୍ୟ ଲକ୍ଷଣ । ଧଇଲେ ବିଷ୍ଣୁ ସୁତ ପୁଣ ॥
ଏମନ୍ତେ ଚାରି ପରକାର । ଶୁଣ ହେ ତୁମ୍ଭେ ଗୋପବର ॥
ଉତ୍ଥାନ ପବନ ଯେ ବୁଝି । ଜାଣି ବୈରାଗ୍ୟ ସାର ଏହି ॥
ସଂଯୋଗୀ ବଇରାଗୀ ସାର । ଅନନ୍ତ ମୁକୁନ୍ଦ କୁମର ॥
ଉଦ୍ଧବ ବଇରାଗ୍ୟ ଭଲ । ରାମ ଯେ ଚନ୍ଦ୍ର ସୁତ ତୁଲ ॥
ମନ ଯେ ବଇରାଗ୍ୟ ସୁଖୀ । ବିଷ୍ଣୁସୁତଙ୍କୁ ପୁଣ ଲେଖି ॥

ଆବର ଅଧ୍ୱ ଏକ ବଧ୍ୱ । ଗୁପତ ବୈରାଗ୍ୟ ପ୍ରସିଦ୍ଧ ॥
ଗୃହର ଝଗଡ଼େ ଥାଆନ୍ତି । ଗୁରୁ ବୈଷ୍ଣବେ ପୂଜେ ନିତ ॥
କୁଣୁଆ ବନ୍ଧୁ ସହୋଦର । ଭୁଞ୍ଜନ୍ତି ଅନ୍ନ ଘୃତ ସାର । ୧୫୦ ।
ଗୁପତ ବଇରାଗୀମାନେ । ଏ ଗୃହ ଫଳ ଲଭେ ପୁଣ୍ୟେ ॥
ଗୃହେ ଦଅନ୍ତି ଅନ୍ନ ଦାନ । ତେଣୁ ଲଭନ୍ତି ଗୃହ ପୁଣ୍ୟ ॥
ଭରଥ ଧର ମୁଁ ଯାଦବ । ଗୁପତ ବଇରାଗୀ ଭାବ ॥
କମାର ରାମ ଦୁଇ ଜାଣ । ରାମ କୁମର ଏକ ଜାଣ ॥
ଦକ୍ଷିଣ ଚନ୍ଦ୍ର ନିରଞ୍ଜନେ । ଗୁପତ ବୈରାଗ୍ୟ ଏମାନେ ॥
ଏମନ୍ତେ ପଞ୍ଚ ପରକାର । ମନେ ଧରନ୍ତି ଯେଉଁ ନର ॥
ସଂସାର ମଧ୍ୟେ ସେହି ସୁଖୀ । ଏହା ନ କଲେ ହୋନ୍ତି ଦୁଃଖୀ ॥
ଚବିଶ ଗୋପାଳେ ହେ ଶୁଣ । ଏ ପଥ କର ହେ ଧାରଣ ॥
ଅଣଅକ୍ଷର ଏକାକ୍ଷର । ତାରକ ଶ୍ୟାମ ପଞ୍ଚାକ୍ଷର ॥
ହରେରାମ ଯେ ପାଞ୍ଚ ମନ୍ତ୍ର । ଜପ କରିବେ ଦୃଢ଼େ ତନ୍ତ୍ର ॥
ଗୋଲୋକ ମନ୍ତ୍ର ଅଣକ୍ଷର । ସତ୍ୟରେ ଏକାକ୍ଷର ସାର ॥
ସତ୍ୟରେ ତାରେକ ମନ୍ତ୍ରର । ଦ୍ୱାପରେ ଶ୍ୟାମ ପଞ୍ଚାକ୍ଷର ॥
ହରେରାମ ଯେ ମନ୍ତ୍ର କହି । କଳିଯୁଗରେ ସାର ଏହି ॥
ହରେରାମରୁ ଉନ ଆଣି । କଲେକ ମନ୍ତ୍ର ଏକ ପୁଣି ॥
ହରେରାମ ଯେ ମନ୍ତ୍ର କଲେ । ନଦିଆ ନଗ୍ରେ ବୁଝାଇଲେ ॥
ପ୍ରାଣୀ ତ ଧରି ନ ପାରିବେ । ଅଳପ କହିଲେ ବୁଝିବେ ॥
ଉଲଟ କଲେ ନାମ ପୁଣ । ହରେକୃଷ୍ଣ ଯେ ମନ୍ତ୍ର ଗଣ ॥
ଛଅ ଅକ୍ଷର ବୁଝାଇଲେ । ତେର ନାମକୁ ଗୋପ୍ୟ କଲେ ॥
ଏରୂପେ ବୈରାଗ୍ୟ ଲକ୍ଷଣ । ଅଚ୍ୟୁତ କଥା ମନେ ଘେନ ॥

ଇତି ଶ୍ରୀ ଗୁରୁଭକ୍ତିଗୀତା କୃଷ୍ଣାସ୍ୱଖଣ୍ଡେ ବୈରାଗ୍ୟ
ଲକ୍ଷଣେ ନାମ ଚତୁର୍ଥ ମଣ୍ଡଳ ।

---

ସପ୍ତମ ପଟଳ

ସ୍ୱମୁରେ ପଗ୍ୱରୁଛ୍ନ ଦୁଇ । ମୁକୁନ୍ଦ ଅନନ୍ତ ଦ୍ୱିଜଇ ॥
ଗୁରୁ ଦର୍ଶନେ କବା ଫଳ । କହିବା ଏଥିର ମଙ୍ଗଳ ॥
ବୈଷ୍ଣବ ସେବାରେ ଯେ ଗତ । ଅତଏ କବା ପୁଣ୍ୟ ହୋନ୍ତି ॥
ଯୋଦରେ କବା ହୋଇବେ ନାଶ । କୁଣିଆ କବା ପଢ଼ଗ୍ରେଷ ॥
ବନ୍ଧୁକୁ ଦେଲେ କସ ହୋଇ । ମାତା ସେବଲେ କସ ପାଇ ॥
ପିତା ସେବଲେ କସ ଫଳ । ଏଥିର କହିବା ସୁଫଳ ॥
ଶୁଣ ସୁମନେ ଗୋପସୁତ । କହିବା ତହିଁର ଯେ ମତ ॥
ଏକାଦଶୀ ଦିନରେ ଶିଷ୍ୟ । ଗୁରୁ ଦର୍ଶନେ ପାପ ନାଶ ॥
ଅମାବସ୍ୟା ଦିନ ଦରଶନ । ପୂଜିଲେ ହୋଇବେ ଧନ ଜନ ॥
ସଂକ୍ରାନ୍ତିରେ ସେବ ଗୁରୁ । ବ୍ୟାଧି ରୋଗର ଶିଷ୍ୟ ତରୁ ॥
ପୂର୍ଣ୍ଣିମୀ ଦିନ ଗୁରୁ ସେବା । ପୂଜିଲେ ରାଜ୍ୟ ଯଶ ଦେବା ॥
ଦ୍ୱାଦଶୀ ଦିନ ଗୁରୁ ଅନ୍ନ । ଦେଲେ ଗୋଲୋକେ ହୋଏ ସ୍ଥାନ ॥
ବରଷ ଲେଖି ଅନ୍ନ ଦେଲେ । ଯମ ଡରଇ ତାକୁ ଭଲେ ॥
ଶ୍ରୀ ଗୁରୁ ସେବା ଯେ କରଇ । କୋଟି ତୀର୍ଥର ଫଳ ପାଇ ॥
ଗୁରୁ ଚରଣ ଯେ ଘଷଇ । ସ୍ୱରୂପ ପାପ ଛୁଟିଯାଇ । ୧୪ ।
ଗୁରୁଙ୍କ ଅବଶେଷ ଖାଇ । ନିର୍ମାଲ୍ୟ ଠାରୁ ଅଧିକଇ ॥
ଗୁରୁ ଚରଣ ଜଳ ଖାଇ । ଗଙ୍ଗା ସ୍ନାହାନ ଫଳ ପାଇ ॥
ଗୁରୁଙ୍କୁ ସୁଆସନ ଦେଇ । ବସନ ବହୁତ ମିଳଇ ॥
ଗୁରୁ ମୁକତି ଗତି ଦାତା । ଗୁରୁଟି ଜୀବ ଉଦ୍ଧାରନ୍ତା ॥
ବିବାହ ବେଳେ ବିପ୍ରମାନେ । ଗୁରୁ ସୁମରନ୍ତି ଯତନେ ॥
ମରଣ କାଳେ ସାଧୁଜନ । ବୋଲନ୍ତି ଗୁରୁଙ୍କର ଧ୍ୟାନ ॥
ପିତୃ ପୂଜନ ଶ୍ରାଦ୍ଧକାଳେ । ଗୁରୁ ସୁମର ହୃଦସ୍ଥଳେ ॥
ଗମନେ କାର୍ଯ୍ୟ ପଥେ ଯାଇ । ଗୁରୁ ସୁମର ଫଳ ପାଇ ॥
ଗୃହ ତୋଳି ରହିବାବେଳେ । ଗୁରୁ ପୂଜିଲେ ଅନ୍ନ ମିଳେ ॥

ଏଣୁ ଗୁରୁ ବୈଷ୍ଣବ ଏକ । ସତ କରନ୍ତି ଯେ ବିବେକ ॥
ପ୍ରଥମେ ବୈଷ୍ଣବ ଯେ ହୋଇ । ଗୃହୀର ଗୃହରେ ମିଳଇ ॥
ପ୍ରତେ ହୋଇଲେ ଗୁରୁ ହୁଏ । ଗୁରୁ ବୈଷ୍ଣବ ଭିନ୍ନ ନୋହେ ॥
ଗୁରୁ ପୂଜିଲେ ଯେତେ ଫଳ । ବୈଷ୍ଣବ ପୂଜା ସେତେ ଭଲ ॥
ଶ୍ରଦ୍ଧାରେ ଗୁରୁ ବଇଷ୍ଣବ । ଶ୍ରଦ୍ଧାରେ ପୂଜା ଯେ କରିବ । ୩୦ ।
କିସ କହିବା ତାଙ୍କ ପୁଣ୍ୟ । ଦେବେ କରନ୍ତି ତାଙ୍କୁ ଧନ୍ୟ ॥
ଧନ ଅରଜ ଯେଉଁ ଶିଷ୍ୟ । ଗୁରୁ ସେବାକୁ ଯେ ବିରସ ॥
ଧିକ ଯେ ତାହାଙ୍କ ଜୀବନ । ଶୂକର କୁକୁର ଯେସନ ॥
କୁଟୁମ୍ବ ପୋଷି ଦିନ ନେଇ । ମଲେ ଶୂକର ଜନ୍ମ ପାଇ ॥
ଚୌରାଶୀ କୋଟି ଯୋନି ଭ୍ରମି । ମନୁଷ୍ୟ ଜନ୍ମେ ଥିଲା ଗମି ॥
ପୁଣ ସେ କୃପଣ ହୋଇଲା । ଏଣୁ ସେ ଚୌରାଶୀ ଭମିଲା ॥
ପୁଣ୍ୟ ମାନବ ଦେହ ପାଇ । ଗୁରୁ ସେବିଲା ମନେ ନାହିଁ ॥
ବୈଷ୍ଣବ ନ କଲା ପୂଜନ । ଜନ୍ମ ଲଭିଲା ହୀନ ଜନ ॥
ମାତା ପିତାର ସେବା କହୁ । ଫିଟିବ ଆତ୍ମର ସନ୍ଦେହ ॥
ଶୁଣ ହେ ସୁଦାମ ଗୋବିନ୍ଦ । ଅନନ୍ତ ମୁକୁନ୍ଦ ଆନନ୍ଦ । ୪୦ ।
ପ୍ରଥମେ ମାତା ଗୁରୁ ହୋଇ । ଉଦରେ ଧଇଲେ ଯେ ନେଇ ॥
ପାଞ୍ଚ ଦିନ ଯେ ଗର୍ଭେ ରହି । କୁମ୍ଭାର ଚକ ପ୍ରାୟେ ହୋଇ ॥
ଫେରନ୍ତେ ମାତା ଦୁଃଖ ହୋୟେ ! ଗୁଣ କି ଶୁଝି ପାରେ ପୋଏ ॥
ଭୂଲଣ ଦଶମ ଯେ ଦିନ । କଷ୍ଟଲେ ରହେ ରଜ ସ୍ଥାନ ॥
ପନ୍ଦର ଦିନେ ସାଞ୍ଚ ହୋଏ । ପକ୍ଷ ପକ୍ଷକେ ବଢ଼େ ଜାୟେ ॥
ବାଢ଼ନ୍ତେ ମାତା ଦୁଃଖ ପାଇ । ଅନ୍ନ ଭୁଞ୍ଜି ଣ ନ ପାରଇ ॥
ଶୟନେ ସୁଖ ଆଉ ନାହିଁ । ଗମନେ ବହୁ ଦୁଃଖ ପାଇ ॥
ଦଶମ ମାସରେ ଜନମ । ଯୋନି ଗମନେ ପାଏ ଶ୍ରମ ॥
ପୁଣ ପାଞ୍ଚ ବରଷ ହୁଏ । ନରକ ସେବା କରୁଥାଏ ॥
ବନ୍ଦୀର ପ୍ରାୟେ ବନ୍ଦୀ ହୋଇ । ଶରୀର ସୁଖ ଆଉ କାହିଁ ॥
ମନରେ କଲପନା ଥାଇ । ଏହାକୁ ପାଳୁ ଅଛୁ ମୁହିଁ । ୫୧ ।

ମୋର ଅନେକ କାଳେ ପୁଣି । ମତେ ଏ ଦେବ ଅନ୍ନ ପାଣି ॥
ଏହି କାରଣେ ପୁତ୍ର ଜାତ । ସେବା କରଇ ମାତ ସୁତ ॥
ଏଣୁ ଏ ପୁତ୍ରମାନେ ଶୁଣ । ସେବିବ ମାତାଙ୍କ ଚରଣ ॥
ମାତାଙ୍କୁ ଅନ୍ନ ବସ୍ତ୍ର ଦେବ । ସୁସ୍ଥାନେ ନିଶ୍ଚିନ୍ତେ ରହିବ ॥
ବଚନ ତାଙ୍କ ପାଳୁଥିବ । ବିମୁଖ କେବେ ନ କରିବ ॥
ସତ୍ପାତ୍ରରେ ଅନ୍ନ ଦାନ ଦେବ । ଏହାଙ୍କୁ ପୂର୍ବରେ ଲେଖିବ ॥
ଏ ସେବା ଯେ ପୁତ୍ର ନ କଲା । ସେ ପୁତ୍ର ଜୀଇ ଜୀଇ ମଲା ॥
ସେ ପୁତ୍ର ମୂର୍ଖ ସମ ତୁଲ । ଧିକ ସେ ପୁତ୍ର ମଲେ ଭଲ ॥
ମାତାର ଋଣ ନ ଶୁଝିଲା । ଋଣୀ ହୋଇଣ ନାଶ ଗଲା ॥
ଜନକ ମାତାର କଷଣ । ଶୁଝିବ କାହୁଁ ପୁତ୍ର ପୁଣ ॥ ୭୧ ।
ମାତାର ଗୁଣ ଅବା ଯେତେ । ମୁଖେ କେ କହିପାରୁ କେତେ ॥
ଏଣୁକି ମାତା ମୂଳ ଗୁରୁ । ସୁପୁତ୍ର ସେବା ଏଣୁ କରୁ ॥
ପିତାର ଗୁଣ ଏବେ କହି । ଫିଟିବ ମନର ଯେ ମୋହ ॥
ଶୁଣ ବାଳକ ବୃନ୍ଦାବନ । ଉତ୍ପନ୍ନ ବସ୍ତ୍ର ହେ ପବନ ॥
ପାଞ୍ଚ ବରଷ ଭୋଗ କଲେ । ଖେଳ ଛୁଆଇଁ ପିତା ଭଲେ ॥
ବିଦ୍ୟା ପଢ଼ାଇ କରେ ବଡ଼ । ବିଭା ସଂଯୋଗରେ ଝଗଡ଼ ॥
ଧନ ଅରଜ ଯେତେ ଆଗ । ତାହାର ଅର୍ଥରେ ହରାଇ ॥
ଗୁରୁ ବୈଷ୍ଣବ ନ ଦିଅଇ । ପୁତ୍ର ସ୍ନେହରେ ଧନ ବଇ ॥
ଏ ପୁତ୍ର ସମ୍ପତ୍ତିଥିଲେ ପୁଣ । ପ୍ରାଣେ ପୋଷିବ ଏ ସୁଖେଣ ॥
ଏଣୁ ପିତାଙ୍କୁ ସେବା କର । ପୂଜିବ ଦେଇ ଅନ୍ନ ବାସ ॥
ଉତ୍ତମ ଗୃହେ ସ୍ଥାନ ଦେବ । ଉତ୍ତମ ଭୋଗ ଭୁଞ୍ଜାଇବ ॥
ଉତ୍ତମ ବସନ ଅଙ୍ଗରେ । ବଚନ ପାଳିବ ହୃଦରେ । ୭୨ ।
ମରଣ କାଳ ଯାଏ ପୁଣ । ପରିତ୍ରେ କାର୍ଯ୍ୟ ଯେ କରିଣ ॥
ମାତା ପିତାଙ୍କୁ ଏଡ଼ି କରି । ମନ ଗର୍ବରେ କାର୍ଯ୍ୟ କରି ॥
ସଂସାରେ ସୁଖ ତାଙ୍କ ନାହିଁ । ଅନ୍ନ ବସନ ନ ମିଳଇ ॥
ତାହାଙ୍କୁ ବୃଦ୍ଧକାଳେ ପୁଣ । ଦୁଃଖ ପାଆନ୍ତି ସେ ହୃଦେଣ ॥

ସେ ପୁତ୍ରଅଂଶ ନ ବଢ଼ଇ । ଗୃହରେ ଅନ୍ନ ନ ମିଳଇ ॥
ଏଣୁକି ମାତା ପିତା ଗୁରୁ । ଗୁରୁ ବୈଷ୍ଣବ ସମ କରୁ ॥
ମାତା ପିତା ଗୁରୁ ବୈଷ୍ଣବ । ଏ ଚାରି ଅଙ୍ଗ ଏକ ଭାବ ॥
ସୁପୁତ୍ର ଯେମାନେ ହୁଅନ୍ତି । ଏ ଚାରି ଅଂଶକୁ ପୂଜନ୍ତି ॥
କୁପୁତ୍ର ଯେଉଁ ଜନମାନେ । ବିମୁଖ କରି ଏହୁ ଜନେ ॥
ଦାରାକୁ ପୋଷିଣ ଆନନ୍ଦ । ଅନ୍ତେ ଲଭନ୍ତି ବଡ଼ ଧନ୍ଦ ॥
ଅଳପ ଦିନେ ମୃତ୍ୟୁ ହୋଏ । ଅଂଶ ନ ରହେ ତାର ଦେହେ ॥
ଏଣୁ ଏ ଚାରି ଅଙ୍ଗ ସାର । ଶୁଣ ହେ ମୁକୁନ୍ଦକୁମର ॥
କଳିରେ ଏ ଚାରି ଯେ ସାର । ଶୁଣ ହେ ଅନନ୍ତକୁମର ॥
ନାମକୁ ଲକ୍ଷ୍ୟ କରୁଥିବ । ମନ୍ତ୍ରକୁ ମନରେ ଭଜିବ ॥
ମାତା ପିତାଙ୍କ ସେବାକରି । ରହିବ କୁଟୁମ୍ବ ଆବରି ॥
ଏ ପୁତ୍ର ଗୃହରେ ଉତ୍ତମ । ପୃଥ୍ୱୀରେ ସାର ଅଟେ ଜନ୍ମ ॥
ସୁପୁତ୍ର ଭୂମ୍ୟେ ଷଡ଼ ହୋଏ । ସେବିବ ମାତା ପିତା ପାଦ୍ୟେ ॥
ବାର ବରଷ ଫେରି ଆସ । ରହିବ ମାତା ପିତା ପାଶ ॥
ସଂଯୋଗୀ ଲକ୍ଷଣ ଧରିବ । ଗୃହ ଆବରି ରହିଥିବ ॥
ଅତିଥି ହେଲେ କସ ହୋଇ । ଏ କଥା କହିବା ବୁଝାଇ ॥
ଗୃହରେ ଅତିଥି ମିଳିବ । ହରଷେ ତାହାକୁ ପୂଜିବ ॥
ଅତିଥି ଉପବାସ କଲେ । ଧର୍ମ ନ ରହେ ତାର ଭଲେ ॥
ଦୁଧ ତଣ୍ଡୁଳ ଫଳ ଜଳ । ଯେ ଅବା ଥିବ ନିଜ ଆଳ ॥
ତାହାଙ୍କୁ ସୁଖରେ ଦେଇଣ । ସନ୍ତୋଷ କରିବ ଯେ ପୁଣ ॥
ଅନ୍ନ ଭୋଜନ ଯେବା ଦେବ । ତହିଁର ପୁଣ୍ୟ କେ ଲେଖିବ ॥
କୋଟି ଅଶ୍ୱମେଧର ଫଳ । କୋଟିଏ ତୀର୍ଥ କରି ତୁଲ ॥
ଅତିଥି ଉପାସ କରାଇ । ଯେ ଗୃହେ ଅନ୍ନ ଭୁଞ୍ଜେ ଯାଇ ॥
ଜଳ ଖାଇଲେ ମଦ୍ୟ ତୁଲ । ଗୋମାଂସ ଖାଇଲେ ଯେ ଭଲ ॥
ଗୃହରେ ଧର୍ମ ଯେତେ ଥାଇ । ଘୁଞ୍ଚି କରିଣ ଗୃହୁଁ ଯାଇ ॥
ଏ ଯେନ ଅତିଥି ସେବିବ । ଏ କଥା ଅନନ୍ତ ବଦିବ ॥

କୁଟୁମ୍ବଜନ ଅନ୍ନ ଦେଲେ । ଗୃହସ୍ଥଙ୍କି ଫଳ ଲଭେ ଭଲେ ॥
ଶୁଣ ହେ ପବନ ମକୁନ୍ଦ । କହିବା ତହିଁ ଭଲ ମନ୍ଦ ॥
ଦରିଦ୍ର କୁଟୁମ୍ବ ଆସିଣ । ସୁଖୀ କୁଟୁମ୍ବ ମିଳେ ପୁଣ ॥
ଏହାକୁ ସନ୍ତୋଷେ ରଖିବ । ଏ ପୁଣ୍ୟ ମୁଖେ କେ କହିବ ॥
ଶ୍ରୀ ଗୀତାଯ୍ୟେଣ ପରମାଣ । ଯେଥୁ ଯେ ପୁଣ୍ୟ ନାହିଁ ପୁଣ ॥
ଗୋହତ୍ୟା ବ୍ରହ୍ମହତ୍ୟା ଦୋଷ । ବଶୁଳୀ ମାତା ରତଦୋଷ ॥
ସୁରା ପାନର ଦୋଷ ପାଇ । କୁଟୁମ୍ବ ନାଶଣ କରଇ ॥
ଯେବେ ଅରଜ ଧନ ଥିବ । ଦରିଦ୍ର କୁଟୁମ୍ବ ରଖିବ ॥
ବନ୍ଧୁ କୁଣିଆ କଥା କହ । ଫିଟିବ ଅନ୍ତର ସନ୍ଦେହ ॥
ଭଲ ପର୍ଯ୍ୟର ସନ୍ଧମାନ । ମୁକୁନ୍ଦ ଅନନ୍ତ ଦ'ଜଣ ॥
ଝିଅର ଘରୁ ବନ୍ଧୁମାନ । ପୁଅର ବନ୍ଧୁ ଯେ ଗମନ ॥
ମାତାର ଅଂଶ ଯେ ଆସଇ । ପିତାର ବନ୍ଧୁ ଯେ ମିଳଇ ॥
ଲେଖାଯୋଖାରେ ବନ୍ଧୁମାନ । ଯେ ଅବା ମିଳିବ ଭୁବନ ॥
ହରଷ କରି ପଚାରିବ । ଆଶ୍ୱାସି ବଚନ କହିବ ॥
କିଛି ବା ଧନ ସେ ମାଗିଲେ । ମିଳିଲେ ଦେବ ତାକୁ ଭଲେ ॥
ନ ଥିଲେ ପୁଣ କାହୁଁ ଦେବ । କିପାଇଁ ପାପ ଏ ଲାଗିବ ॥
କୁଣିଆ ବନ୍ଧୁଙ୍କୁ ନିରାଶ । କରନ୍ତି ଯେବଣ ମନୁଷ୍ୟ ॥
ଅଗ୍ନିରେ ତାର ଧନ ନାଶ । ବହୁ ନିଅନ୍ତି ରାଜବଂଶ ॥
ଚଉର୍ଯ୍ୟ ମୁଖେ ଧନ ପାଇ । ଉପାୟେ କଲେ ନ ପୂଜଇ ॥
ଗୁରୁ ବୈଷ୍ଣବ ମାତା ପିତା । ଗୃହରେ ଅତିଥି ମିଳନ୍ତା ॥
ବନ୍ଧୁ ଦରିଦ୍ର ଯେ ସୋଦର । ଯେ ଦୟା କରନ୍ତି ହୃଦର ॥
ଏହାଙ୍କ ଅଂଶମାନେ ପୁଣ । ଅକାଳେ ନୁହନ୍ତି ମରଣ ॥
ଦୁର୍ଭିକ୍ଷମାନ ଯେ ପଡ଼ିଲେ । ମରିଣ ନ ଯାନ୍ତି ସେକାଳେ ॥
ସେ ଜନ ଅଂଶ ବଂଶ ଥାନ୍ତି । ସଂସାରେ କ୍ରୀଡ଼ା ସେ କରନ୍ତି ॥
କୃପଣ ନିରାଶ ଯେ ଜନ । ଅକାଳେ ନାଶ ଯାନ୍ତି ଜାଣ ॥
ଶୁଣ ମୁକୁନ୍ଦ ହେ ଅନନ୍ତ । ତୁମ୍ଭର ପିତା ଭାଗ୍ୟବନ୍ତ ॥

ତୁମ୍ଭର ପିତାମାନେ ପୁଣ । ନରଗଣ ନୁହନ୍ତି ସେ ଜାଣ ॥
ଏଣୁ ତୁମ୍ଭର ଅଂଶମାନେ । ମଞ୍ଚରେ ଥିବେ ଏ ଯତନେ ॥
ଯୋଜାଏ ଦିନ ଯଶ ଥିବ । ଏ ପୁଣ୍ୟବଳେ ପାପ ଯିବ ॥
ଏହୁ ବଚନ ମନେ ଧର । ସସାର ନୁହଇଟି ଚର ॥
ସ୍ତିୟା ପୁଅ ଝିଅ ବାପ । ମାତା ବନ୍ଧୁ ଆପଣ ରୂପ ॥
ପାଣିଫୋଟକା ପ୍ରାୟେ ହୋଇ । ପବନେ ହୋଇ ନାଶଯାଇ ॥
ବୃକ୍ଷର ଫଳ ପ୍ରାୟେ ହୋଇ । ପାଚିଲେ ଦେହ ଝଡ଼ିଯାଇ ॥
ପୁରୁଣା ବସନର ମତ । ଚିରିଲେ ଲୋଡ଼ା ନୁହେଁ ସେ ତ ॥
ଏହା ବୁଝିଣ ସାଧୁଜନ । ମିଳିଲେ ଦ୍ୟନ୍ତି ଅନ୍ନ ଦାନ ॥
ଚଦ୍ଦଶ ଗୋପାଳ ହେ ଶୁଣ । ଗୋବିନ୍ଦ ନାମକୁ ଶୁଣିଣ ॥
ଏ ଖୋଲ କରତାଳ ଧରି । ଆନନ୍ଦେ ବୋଲ ହରି ହରି ॥
ତେବେ ପାଇବ ସୁଖ ମହି । ତୁମ୍ଭଙ୍କ ଦୁଃଖ ଆଉ କାହିଁ ॥
ଗୋବିନ୍ଦ ବଣିଜ ଯେଜନ । ସସାରେ କର ଯେ ଭ୍ରମଣ ॥
ସୁଖ ସ୍ଥାନରେ ବସୁଥିବ । ଦୁଃଖ ସ୍ଥାନକୁ ତେଜି ଯିବ ॥
ଏ ନବଦ୍ୱୀପା ପୃଥ୍ୱୀ ହୋଇ । ଗୋବିନ୍ଦ ସ୍ଥାନ ଏ ଅଟଇ ॥
ତୁମ୍ଭେ ଏଥିରେ କ୍ରୀଡ଼ା କର । ଏ ଗୃହ ଦ୍ୱାରରେ ଯେ ଫେର ॥
ପୂର୍ବ ପଶ୍ଚିମ ଏ ଉତ୍ତର । ଦକ୍ଷିଣ ଗୃହ ପରକାର ॥
ଭକତଜନର ଏ ଘର । ସସାର କୃଷି ତାହାଙ୍କର ॥
ଭକ୍ତି ତାଙ୍କର ମୂଳଧନ । ଅଧିକ କିସ ପ୍ରୟୋଜନ ॥
ଅଧିକ ପ୍ରହରଦେ ଦେଲେ । ଗରବେ କୃଷ୍ଣ ନ ଚିହ୍ନିଲେ ॥
ଏଣୁ ସେ ବର ମାଗି ଛଇଁ । ଅଳପେ ଦେବୁ ସ୍ୱବଗ୍ରାହି ॥
ଏ କଥା ଦୃଢ଼ ସତ୍ୟ ଧର । ଅଚ୍ୟୁତ ଆଜ୍ଞା ଶିରେ କର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ମାତୃ
ପିତୃ ଭକ୍ତଜନ ପୂଜନେ ନାମ ପଞ୍ଚମ ପଟଳ ।

———

## ଷଷ୍ଠ ପଟଳ

ଶ୍ରୀ ଗୁରୁଦେବ ଆଜ୍ଞା ଦଅ । ପ୍ରହ୍ଲାଦର ବର କହ ॥
ଶୁଣ ହେ ସୁଜନ ମୁକୁନ୍ଦ । ସୁସାଧୁ ପବନ ଆନନ୍ଦ ॥
ଉତ୍ତଥାନ ବାଳକ ଗୋବିନ୍ଦ । ସୁଦାମ ଯାଦବ ହେ ବନ୍ଦ ॥
ଗୁରୁ ବଚନ ପ୍ରତିପାଳ । ସେବକ ମନ ଚଢ଼େ ଭଲ ॥
ଗୋପାଳ କୁଳକୁ ଚାହିଲେ । କଳରେ କଥା ବୁଝାଇଲେ ॥
ଭଗତ ମୁକତ ବିଗ୍ରହ । ମନରେ ବିସ୍ମୟ ପଗ୍ରହ ।୨।
ମନର ସଂଶୟ ଫିଟିଲା । ତୁମ୍ଭର ଜନ୍ମ ଦୁଃଖ ଗଲା ॥
ପ୍ରହ୍ଲାଦର ଜନ୍ମ ଶୁଣ । କହିବା ଠିକ ଭାଷା ପୁଣ ॥
ପ୍ରହ୍ଲାଦକୁ ବର ଦେଲେ । ସ୍ୱର୍ଗରେ ଇନ୍ଦ୍ର ଭାଳୁ ନେଲେ ॥
ଅନେକ କୃଷ୍ଣ ବିଗ୍ରହଣ । କହିଲେ ଭକ୍ତ ପରାୟଣ ।୧୦।
ପ୍ରହ୍ଲାଦର ମନେ ଦୁଃଖ । ଇନ୍ଦ୍ର ପଣରେ ନାହିଁ ସୁଖ ॥
ଇନ୍ଦ୍ର ପଣକୁ ତେଜି ଆସି । ଦ୍ୱାରକା ପୁରେ ସୁଖେ ବସି ॥
କୃଷ୍ଣର ଗଣ ଯେତେ ଥିଲେ । ପ୍ରଭୁଙ୍କ ଶ୍ରୀମୁଖେ କହିଲେ ॥
ତକ୍ଷଣେ ପ୍ରଭୁ ଯେ ଉଠିଣ । ସଙ୍ଗତେ ଘେନ ସର୍ବ ଜନ ॥
ପ୍ରହ୍ଲାଦକୁ ଦଣ୍ଡବତ । ବହୁତ କଳାସିବ କୃତ ॥
ମନରେ ବିଗ୍ରହ କରଣ । ଉପ୍ଲ କରିବ ଏହିକ୍ଷଣ ॥
ଜାଣିଣ ଭଗତର ମନ । କହନ୍ତି ଶ୍ରୀ ମଧୁସୂଦନ ॥
ତୁମ୍ଭର ଲଲାଟରେ ପୁଣ । ଶ୍ରୀହରି ଅଧର ଲକ୍ଷଣ ॥
ଆମ୍ଭକୁ ଆମ୍ଭେ ଦଣ୍ଡବତ । ତୁମ୍ଭେ ନ କର ଦୁଃଖ ଚିତ୍ତ ॥
ଏପରେ ଅଛ ବର ମାଗ । ଦେବଇଁ ଉତ୍ତମ ଯେ ଭୋଗ ॥
ସ୍ତୁତି କରିଣ ଭକ୍ତ କହ । ଏ ବର ମାଗୁଅଛୁ ମୁହିଁ ॥

---

୬-୨—ଅପର, ଗ ।

ତୁମ୍ଭ ଭଗତ ଯେତେ ଜନ । ଦୁଃଖୀ ହୋଇଣ ଥିବେ ଛାନ ॥
ତୁମ୍ଭ ଚରଣେ ଚିତ୍ତ ଦେଇ । ତୋ ଗୁଣ ଗାଇ ଦିନ ନେଇ ॥
ଦିନ ବଞ୍ଚିବେ ଦୁଃଖ ସୁଖେ । ନ ପଡ଼ି ମାୟା ମୋହ ଦୁଃଖେ ॥
ଶୁଣିଣ ଭଗତ ବଚନ । କହନ୍ତି ପ୍ରଭୁ ଭଗବାନ ॥
ତୁମ୍ଭ ଆମ୍ଭର କଥା ଥିବ । ଏହୁ ବରକୁ ମନେ ଭାବ ॥
ଯେତେ ଭଗତ ଯେତେ ସ୍ଥାନେ । ଥିବେ ଯେ ଆମ୍ଭର ଭଜନେ ॥
ଲେଖି କରଣ ପଢ଼ି ଦେବୁ । ସମ୍ବାଦ ମୋହକୁ ଏଣିବୁ ॥
ଆଉର କଥା ଏକ ଶୁଣ । ମୋ ଭକ୍ତ ଯେତେ ଛନ୍ତି ଗଣ ॥
ସଂସାରି ଜନଙ୍କର ଘରେ । ବିଶ୍ରାମ କରିବେ ସୁଖରେ ।୩୦।
ସେ ମୁଖେ ବର ଦେବେ ଯେତେ । ପ୍ରାପତ ହୋଇବ ତୁରିତେ ॥
ଧନ ଜନ ଯେ ପଣ ମାନ । ଭୋଗ କରିବ ସେହୁ ଜନ ॥
ମୋହର ସତ୍ୟ ବଚନବାର । ଶୁଣ ହେ ହରଣ୍ୟ କୁମର ॥
ଯେ ଭକ୍ତ ଦୁଃଖୀ ହୋଇଥିବେ । ସେସବୁ ଜନେ ସୁଖୀ ହେବେ ॥
ଅମାବାସ୍ୟା ସଙ୍କ୍ରାନ୍ତି ଦିନ । ଦ୍ୱାଦଶୀ ପୌର୍ଣ୍ଣମୀ ଭୋଜନ ॥
ଭଗତ ମୁଖେ ଅନ୍ନ ଦେବ । ଏ ବର ତାହାଙ୍କୁ ଫଳିବ ॥
କାରଯ ଅକାର୍ଯ ଶ୍ରାଦ୍ଧରେ । ଭକତ ଭୋଜନ ଯା ଘରେ ॥
ସଂସାରେ ଧନେ ହେବେ ସୁଖୀ । କେବେହେଁ ନୁହନ୍ତି ସେ ଦୁଃଖୀ ॥
ତୀର୍ଥ ବ୍ରତକୁ ଭକ୍ତ ଯାଇ । ଅଥବା ବସ୍ତ୍ରରେ ମିଳଇ ॥
ଏକାଳେ ଅନ୍ନ ବସ୍ତ୍ର ଦେଲେ । ସୁଖୀ ହୁଅନ୍ତି ସେହୁ ଭଲେ ॥
କ୍ଷୁଧା ପିପାସା ବେଳେ ପୁଣ । ମୋ ଭକ୍ତ ସନ୍ତୋଷ କରଣ ॥
ଶାନ୍ତ କରନ୍ତି ଯେଉଁମାନେ । ସୁଖ ଲଭନ୍ତି ଧନ ଜନେ ॥
ଭକତ ମୋତେ ସମର୍ପିଣ । ପଛେ ଣ କରଇ ଗ୍ରହଣ ॥
ଦୂରୁ ଆସିଣ ଭକ୍ତ ପାଖ । ମୁଁ ତାହା କରଇ ଯେ ଗ୍ରାସ ॥
ସର୍ବଜ୍ଞ ପ୍ରାପ୍ତେ ମୁଁ ଜାଣଇ । ଯେ ଭକ୍ତ ଯେ ସବେ ପୂଜଇ ॥
କେ ଅବା ଏକ ଅଙ୍ଗେ ଥାଇ । କେ ଅବା ଦଶଅଙ୍ଗେ ଜଗଇ ॥
କେ ଅବା ପାଞ୍ଚ ସାତ ମିଳି । କେ ଅବା ଶରେ ଯେବେ ମେଳି ॥

ଯେ ଭକ୍ତ ଯେତେ ସମ୍ଭାଳଇ । ଲେଖିଣ ପଢ଼ି ମୁଁ ବଞ୍ଚଇ ॥
ଶୁଣ ହେ ପ୍ରହ୍ଲାଦ ଦାସ । ସତ୍ୟ ବଚନ ଏ ପ୍ରକାଶ ॥
ତୁମ୍ଭଙ୍କୁ ଏହୁ ବର ହେଉ । ସଦ ଗୁବରେ ଧନ ରହୁ ।୫୦।
ତୁମ୍ଭ ଭଗତମାନେ ପୁଣ । ରହିବେ ସଦ ଗୁବେ ଶୁଣ ॥
ସସାରେ ପ୍ରାଣୀ ଧନ ଯେତେ । ଅମ୍ଭର କୋଠ ଏ ସମସ୍ତେ ॥
କୋଠ ଧନରୁ ତୁମ୍ଭେ ମାଗି । ଭୁଞ୍ଜିଣ ହେବ ସୁଖ ଭୋଗୀ ॥
ଖୋଲ କର୍ତ୍ତାଳ ଚୂଳ ମାଳ । ଏ ଭେଖ ଘେଳଣ ଗୋପାଳ ॥
ଉଦର ଭଖ ମାଗି ପୋଷ । ପୂର୍ବ ପଶ୍ଚିମ ବୁଲ ଦେଶ ॥
ସମ୍ପଦ ମଦେ ସୁଖ ନାହିଁ । ଧନରେ ପ୍ରାଣୀ ଭୂଲି ଯାଇ ॥
ପଣରେ ପ୍ରାଣୀ ହୋଇଣେ ମତ । ଜନରେ ମତ ଗରବନ୍ତ ॥
ଏ ରସେ ତୁମ୍ଭ ମନ ନାହିଁ । ବୈରାଗୀ ଅଟ ବାର ଖାଇ ॥
ସସାରେ ତୁମ୍ଭେ ସୁଖେ ଖେଳ । ଶୁଣ ହେ ବାରଣ୍ଟି ଗୋପାଳ ॥
ପ୍ରଭାତୁ ସ୍ନାହାନ କରବ । ଛାୟା ରୂପକୁ ସୁମରବ ।୬୦।
ଦ୍ୱିତୀୟ ପ୍ରହର ସ୍ନାହାନ । କୈଶୋର ରୂପକୁ କର ଧ୍ୟାନ ॥
ସନ୍ଧ୍ୟାରେ ସ୍ନାହାନ କରଣ । ଅବାଙ୍ଗ ରୂପକୁ ଗୃହିଣ ॥
ପ୍ରଥମ ପ୍ରହର ରହେଣ । ଭଜନ କର ମନ୍ତ୍ର ଗୁଣ ॥
ଦ୍ୱିତୀୟ ପ୍ରହର ରହେଣ । ଯନ୍ତ୍ରକୁ ଗୁଣିବ ମନ୍ତ୍ରେଣ ॥
ତୃତୀୟ ପ୍ରହର ବସିବ । ସମାଧ ରୂପକୁ ଧ୍ୟାଇବ ॥
ତୃତୀୟ ପାହାନ୍ତ ପ୍ରହରେ । ସୁମର ବସ ଯେ ହୃଦରେ ॥
କୃଷ୍ଣର ରସ କଥା ମାନ । କରିବ ହୃଦରେ ଗାୟନ ॥
ଶଙ୍ଖ ଶିଙ୍ଘା ବେଣୁ ମୁରଲୀ । ଖୋଲ କର୍ତ୍ତାଳେ ସବେ ମିଳି ॥
ମାର୍ଦ୍ଦଲ ତାଳ ଡମ୍ଫ ବୀଣା । ଖଞ୍ଜଣି ସଙ୍ଗୁ ମାଦଳଣା ॥
ବିବିଧ ରସ ବାଦ୍ୟମାନ । କରିବ ରସରେ ଗାୟନ ।୭୦।
ଅଷ୍ଟ ପ୍ରହର ଗୀତମାନ । କୃଷ୍ଣର ଯେତେ କ୍ରୀଡ଼ାସ୍ଥାନ ॥
ସେ ଅପସରମାନ ଜାଣି । ଗାୟନ କରୁଥିବ ପୁଣି ॥
ଶ୍ରୀରାଧ କୃଷ୍ଣ ପଦେ ଧ୍ୟାନ । ଶ୍ରୀ ବୃନ୍ଦାବନେ ଦେଇ ମନ ॥

ଦ୍ୱାଦଶ ବନକୁ ଭ୍ରମଣ । ଯମୁନା ଗୋବର୍ଦ୍ଧନ ଗିରି ॥
ଚୌରାଶୀ ସଯ ସିଦ୍ଧସ୍ଥଳ । ଷୋଳ ସହସ୍ର ଗୋପମେଳ ॥
ଚୌଷଠି ଗୋପୀଙ୍କ ଚରଣ । ଅନନ୍ତ ଗୋପାଳ ଧାରଣ ॥
ଏହାଙ୍କ ଲୀଳା ଗୁଣମାନ । କହୁଣଥିବ ବୃନ୍ଦାବନ ॥
ତର୍କ ପାଷାଣ୍ଡ କଥା ଯେତେ । ଅଭ୍ୟାସ ନ କରିବ ଚିତ୍ତେ ॥
ମଦ୍ୟ ମାଂସକୁ ଯେ ତେଜିବ । ମାଦକ ଦ୍ରବ୍ୟ ନ ଭକ୍ଷିବ ॥
ଧୂମ ନ ଭକ୍ଷିବ ମୁଖେଣ । ତେଜିବ ଅପୁ ଗଞ୍ଜା ପୁଣ । ୮୦ ।
କଳିରେ ହେବ ବଡ଼ମ୍ବଣା । ସବେଁ ଭକ୍ଷିବ ଜଣେ ଜଣ ॥
ସମସ୍ତେ ସୁରପାନ କରି । ଗୁରୁ ଗୌରବକୁ ଯେ ହରି ॥
ଦେବୀର ପୂଜା ଯେ କରିବେ । ମାଉସୀ ପିଉସୀ ହରିବେ ॥
ଏଥିରେ ଯେଉଁ ଜନ ଥିବେ । ବିରଜା ଦାଢ଼େ ସେ ପଡ଼ିବେ ॥
ଏହିକି ଦେବୀ ବୋଦା ଜାଣ । ଖପରେ ଏହୁ ହେବେ ହାଣ ॥
ମିଛୁଆ ମାଛୁଆ ଯେତେକ । ବସର ଗଞ୍ଜାରେ ମାଜକ ॥
ବିରଜା ଦେବୀ ଅଙ୍ଗ ଏହୁ । ବହୁତ କହିବେ ଏ ମନ୍ତ୍ର ॥
ସଂସାରେ ତନ୍ତ୍ର ଯେ ସ୍ୱଗେଣ । ମଜ୍ଜିଣ ଥିବେ କୁଗ୍ରାସେଣ ॥
ଶୁଣ ହେ ବାରଟିଆ ଦାସ । କହିଲୁ ଭବିଷ୍ୟ ପ୍ରକାଶ ॥
ତୁମ୍ଭ ନିମନ୍ତେ ଗ୍ରନ୍ଥସାର । ରଖିଣଥିବ ତୁମ୍ଭେ ଘର । ୯୦ ।
ଏ ଗ୍ରନ୍ଥମାନ ଅବା ଶୁଣି । ଧରିବେ ଏକ ଏକ ପ୍ରାଣୀ ॥
ଧରିଲେ ଜନ ଯେ ବହନ । ନ ଧରେ ଅଗାନ୍ତ୍ରି ସେ ଜନ ॥
ଏ ଗ୍ରନ୍ଥ ଗୁପତେ ପଢ଼ିବ । ଅଶ୍ରଦ୍ଧା ଜନେ ନ କହିବ ॥
ଅଶୁଚି ସ୍ଥାନେ ନ ରଖିବ । ଅଭ୍ୟାସେ ନିତ୍ୟେ ପଢୁଥିବ ॥
ଅଚ୍ୟୁତ ବଚନ ପାଳିବ । ସଂସାର ସୁଖ ସେ ଲଭିବ ।
ଏ ଭାଷା ଯେହୁ ଏଡ଼ି ଦେବ । ଅଳପ ଆୟୁଷ ଲଭିବ ॥
ସଂସାରେ ସୁଖ ଭୋଗ ନାହିଁ । ରୋଗ ବ୍ୟାଧିରେ କ୍ଷୀଣ ହୋଇ ॥
ଗୁରୁ ଭଗତ ଗୀତା ରସ । ଅଚ୍ୟୁତ କରଇ ପ୍ରକାଶ । ୯୮ ।

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ଭକ୍ତବର କଥନେ
ନାମ ଷଷ୍ଠ ପଟଳ ।

—:*:—

# ସପ୍ତମ ପଟଳ

ଗୁରୁ ପରେ ପରମ ଗୁରୁ ଯେ ଅଟ ତୁମ୍ଭେ ।
ଆତ୍ମ ସ୍ଥିର ଅଧମ ପଣ୍ଡୁରୁ ମନ ଦମ୍ଭେ ॥
ଅନନ୍ତ ମୁକୁନ୍ଦ ଦାସ ବାଳକ ଯେ ଶିଷ୍ୟ ।
ବସ୍ତ୍ରଦାନ କେମନ୍ତ କହିବା ଏଥି ରସ ॥
ସନ୍ଧ ଯେ ବସନ୍ତ କଥା ମନେ ରଖିଥାଅ ।
କଥାଏ କଥା ଏ କରି ପଣ୍ଡୁର ହେ ସୁଅ ॥
ବସ୍ତ୍ରର କେମନ୍ତ କଥା ତାହା ତ କହିବା ।
ବସ୍ତ୍ରର ଗୁଣିଲେ ସିନା ଫଣସ୍ତ ଫେଡ଼ିବା ॥
ଆମ୍ଭେମାନେ ଖୋଲ ତାଳ ଗାୟନ କରିବୁ ।
ଯେଉଁ ଜନ ନ ଭଜିବ ତାଠାକୁ ନ ଯିବୁ ॥
ବସ୍ତ୍ର ଯେ ମନ କଳ୍ପନା ମହୋତ୍ସବମାନ ।
ଶୁଦ୍ଧ ଶ୍ରାଦ୍ଧ ବଟାଳ ଯେ ଗ୍ରଜାର ଭେଦନ ॥
ଯେତେ କଥାମାନକେ ବସ୍ତ୍ର ଯେତୁ ପୁଣ ଦେବ ।
ଏଥିର ଯେ ପାପ ପୁଣ୍ୟ କେମନ୍ତ ଖଣ୍ଡିବ ॥
ଶୁଣ ହେ ଗୋପର ପୋଏ ବସ୍ତ୍ର ଦାନ କଥା ।
ବସ୍ତ୍ର ଦାନ ଦଅନ୍ତି ଯେ ଯେତୁ ସାମରଥା ॥
ଶୁକଳ ବସ୍ତ୍ର ଦେଲେଣ ଏକ ଫଳ ହୋଇ ।
ମଠା ବସ୍ତ୍ର ଦେଲେ ପୁଣ ଦୁଇ ଫଳ ପାଇ ॥
ପାଟ ବସ୍ତ୍ର ଦେଲେ ପୁଣ ତିନ ଫଳ ହୋଇଥେ ।
କମଳ ଲୋଷ୍ଣା ଯେ ଦେଲେ ଗ୍ୟରି ଫଳ ପାଏ ।୧୦ ।
ଧର୍ମ୍ମ ମୋକ୍ଷ ଅର୍ଥ କାମ ଗ୍ୟରି ବସ୍ତ୍ରେ ସ୍ଥାନ ।
ଏ ବସ୍ତ୍ର ଯେ ଦଅନ୍ତି ସେ ଧନ୍ୟ ତା ଜୀବନ ॥
ଅନ୍ନ ବସ୍ତ୍ର କ୍ଷୀର ଦାନ ଯେ ଜନ ଦଅଇ ।
ଦେବେ ତାକୁ ସ୍ତୁତି କରେ ସ୍ୱର୍ଗପୁରେ ଥାଇ ॥

ଦେଲ୍ଲ ଲୋକ ଲଭଇ ତ ଏତେ ପୁଣ୍ୟ ଫଳ ।
ଯେତେଲ୍ଲ ଲୋକ ବ ଶଢ ଏଥିରେ ସୁଫଳ ॥
ମହୋତ୍ସବଠାରୁ ବସ୍ତ୍ର ଯେମନ୍ତ ପାଇବ ।
ନରେ କୃଷ୍ଣ ମନ୍ତ୍ର ବସି ଗୃହରେ ଗୁଣିବ ॥
ବିଭାଘରଠାରୁ ବସ୍ତ୍ର ପାଇଲୋକ ପୁଣ ।
ମନ୍ତ୍ରରାଜ ଜପ ଯେ କରିବ ଦିବାସ୍ୱେଣ ॥
ଶ୍ରାଦ୍ଧଘର ଠାରେ ଯେବେ ବସ୍ତ୍ରମାନ ପାଇ ।
କୃଷ୍ଣ ମନ୍ତ୍ର ଜପ କଲେ ପାପ ନ ଲାଗଇ ॥
ମନ କଲପଣା ଠାରେ ବସ୍ତ୍ର ଯେବେ ଦେବ ।
ରାଧା କୃଷ୍ଣ ମନ୍ତ୍ର ପ୍ରାତଃକାଳେ ସୁମରିବ ॥
ଚଣ୍ଡାଳ ଘରେଣ ବସ୍ତ୍ର ଯେବେ ପୁଣ ଦେଇ ।
ଅଣାକ୍ଷର ମନ୍ତ୍ର ଜପେ ପାପ ନାଶ ଯାଇ ॥
ଶୁଦ୍ଧଘରମାନଙ୍କରେ ବସ୍ତ୍ର ଯଦ ଦେବ ।
ଶୂନ୍ୟ ଯେ ଭଜନ ମନ୍ତ୍ର ସନ୍ଧ୍ୟାରେ କରିବ ॥
ଏତେଠାରୁ ବସ୍ତ୍ର ଯଦ ପାଇବ ହେ ତୁମ୍ଭେ ।
ଆଶାସ୍ତ୍ରୀଜନଙ୍କୁ ଦେବ କହୁଅଛୁ ଆମ୍ଭେ ।୨୦।
ଗୁରୁ ବୈଷ୍ଣବ ଯେ ରଙ୍କ ବ୍ରାହ୍ମଣ ଆସିବ ।
ଏମାନେ ମାଗିଲେ କିଛି ତାଙ୍କୁ ଯାଚଦେବ ॥
ଏମାନେ ହରଣ ହେଲେ ପଞ୍ଚ ପାପ ପାଇ ।
ଗୋରୁହତ୍ୟା ବ୍ରହ୍ମହତ୍ୟା ବିଶୁଳ ଲାଗଇ ॥
ସୁରାପାନ ମାତୃ ଯେ ହରଣ ପାଇ ଦୋଷ ।
ଏ ପଞ୍ଚ ପାତକେ ଯେ ହୁଅନ୍ତ ପରବେଶ ॥
ଏହାକୁ ହରଣ କଲେ ନ ବଢ଼ଇ ଅଂଶ ।
ଅକାଲ କାଲ ପଡ଼ିଲେ ବଂଶ ଯାଇ ନାଶ ॥
ଦରିଦ୍ର ହୋଇଣ ତାକୁ ବସ୍ତ୍ର ନ ମିଳଇ ।
ଯେ ଯାହା ଦେଇଣଥାଇ ଆଗେ ଥାଇ ଧାଇଁ ॥

ପୂର୍ବେ ଦେଇଥିଲେ ପୁଣ ଏ ଜନ୍ମେ ଭୁଞ୍ଜଇ ।
ଏ ଜନ୍ମେ ଦେଇଣଥିଲେ ଆର ଜନ୍ମେ ପାଇ ॥
ପୂର୍ବେ ତୁମ୍ଭେ ଦେଇଥିଲ ଏ ଜନ୍ମେ ଭୁଞ୍ଜିଲ ।
ଆର ଜନମକୁ ତୁମ୍ଭେ ସମ୍ବଳ ବାନ୍ଧିଲ ॥
ତୁମ୍ଭ ଅମ୍ଭ କଥା ଯେ କଳିରେ ଥିବ ରହି ।
ତୁମ୍ଭ ଅଂଶ ଅନ୍ଧାର ଫିଟିବ ଏହା ଗାଇ ॥
ଦୀନ ଅଚ୍ୟୁତର କଥା କରୁଥିବ ସାର ।
ଗୁରୁଭକ୍ତି ଗୀତା ପଢ଼ ପାପକୁ କୁଠାର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ବସ୍ତ୍ର ଦାନ
କଥନେ ନାମ ସପ୍ତମ ପଟଳ ।

## ଅଷ୍ଟମ ପଟଳ

ମାୟା ଜଡ଼ ପାଶକୁ ଶ୍ରୀଗୁରୁଦେବ ଗତି ।
ବାରଟି ଗୋପାଳଙ୍କର ଯେଜବାକ ସ୍ତୁତି ॥
ପବନ ବସ୍ତ୍ର ଯାଦବ ମୁକୁନ୍ଦ ଅନନ୍ତ ।
ବାଳକ ସୁଦାମ ଯେ ଆନନ୍ଦ ଯାଦବତ ॥
ମଥୁରା ଯେ ବୃନ୍ଦାବନ ଗୋବିନ୍ଦ ଉତ୍ପତ୍ତିଆନ ।
ବିନତି କରି କହୁଛୁ କହି ପୁଣ୍ୟଆନ ॥
ଜାତେସାର ଦାସମାନେ ଶୁଣ ଆମ୍ଭ ବାଣୀ ।
ଅମ୍ଭର ଏ ପଞ୍ଚଶାଖା ତୁମ୍ଭେ ଥ ଥ ଶୁଣି ॥
ରାମ ଭ୍ରାତ ଧର୍ମ ବସ୍ତ୍ରୁ ଚନ୍ଦ୍ର ପାଞ୍ଚଜଣ ।
ଦକ୍ଷିଣ ଚନ୍ଦ୍ର କୁମାର ରାମ ମନେ ଘେନ । ୫ ।
କୁମାର ରାମ ଯେ ନିରଞ୍ଜନ ଯେ ବୈଦେହୀ ।
ବିପ୍ର ଗୋବର୍ଦ୍ଧନ ବୃଣିକ ଶ୍ୟାମଦାସ ସାରୀ ॥
ପାଞ୍ଚଦାସ ସାତଦାସ ବାରଦାସ ଶୁଣ ।
ଅଚ୍ୟୁତ ମିଶି ପଚିଶ ଗୁରୁ ଦୀକ୍ଷା ଗୁଣ ॥

ପଚଶ୍ଳ ପଚ୍ଛିଶ ଯେ ପଚ୍ଚିଶୁ ଶହେ ହୁଏ ।
ଶହେରୁ ଲେଖିଲେ ସହସ୍ରେ ଗୋପପୋଷେ ॥
ଏମନ୍ତେ ଷୋଳ ସହସ୍ର ଅଚ୍ୟୁତର ଗୁଣ ।
ଥାନମାନଙ୍କରେ ତୁମ୍ଭେ କରିବ ଭ୍ରମଣ ॥
ସଂସାରର ଜନମାନେ ଦଅନ୍ତି ଯେ ଥାନ ।
କେ କହିପାରିବ ମୁଖେ ତାହାଙ୍କର ପୁଣ୍ୟ ।୧୦।
ବାହାରେ ଆସନ ଦେଲେ ଏକ ଫଳ ହୋଇ ।
ବୃକ୍ଷତଳେ ବାସ କଲେ ଦୁଇ ଫଳ ପାଇ ॥
ବାହାର ଘରରେ ଦେଲେ ତିନି ଫଳ ହୋଏ ।
ଭିତର ଗୃହେ ରଖିଲେ ଚ୍ୟରି ଫଳ ହୋଏ ॥
ଏ ଚ୍ୟରି ଥାନର କଥା କହ ଗୁରୁଦେବ ।
ଥାନର ଯେ ଭଲ ମନ୍ଦ ଆମ୍ଭଙ୍କୁ କହିବ ॥
ଭକ୍ତ ଜନ ଭକ୍ତ ରେଣୁ ବାହାରେ ରହିଲା ।
ଅବଶେଷ ଭଜନ ତ ସେହିଠାରେ ହେଲା ॥
ସେ କୁଟୁମ୍ବ ଥାଇ କରି ନ କଲେ ଦର୍ଶନ ।
ଶ୍ରଦ୍ଧା ମତେ କେବା ଦେଖେ ବାହାରେ ଆସନ ।୧୫।
ପୁତ୍ର ଦାର ବନ୍ଧୁଜନେ କରିବେ ଦର୍ଶନ ।
ଗୃହରେ କରିଣ ଥିବ ଉତ୍ତମ ଯେ ସ୍ଥାନ ॥
କୃଷ୍ଣ ଭକ୍ତମାନେ ବସି କରିବେ ଭଜନ ।
ଗୃହ ଜନ ଦର୍ଶନରେ ପାପ ଯେ ମୋଚନ ॥
ଏଣୁକରି ଗୁରୁଙ୍କୁ ଉତ୍ତମ ସ୍ଥାନ ଦେବ ।
ବୈଷ୍ଣବ ଦେଖିଲେ ଗୁରୁ ପରାଏ ପୂଜିବ ॥
ଉତ୍ତମ ଆସନ ଦେବ କୃଷ୍ଣର ସମାନେ ।
ଉତ୍ତମ ପାତ୍ରରେ ଜଳ ଆଣିବ ସୁମନେ ॥
ସଂସାରେ ଯେମନ୍ତ ଗୁରୁ ରୂପ ଯେ ନ ଥାନ୍ତି ।
ଅନ୍ଧକାର ହୋଇ ପ୍ରାଣୀ ଭ୍ରମିଣ ମରନ୍ତି ।୨୦।

କାହୁଁ ସେ ଜାଣନ୍ତେ ପ୍ରାଣୀ ନିସ୍ତାରଣ ବାଟ ।
ଅକାରଣେ ନାଶ ଯାନ୍ତି ସେ ପ୍ରାଣୀର ଘଟ ॥
ଅନ୍ଧକାର ଘରେ ଯେସନ୍ତେ କିଛି ନ ଦିଶଇ ।
ଦୀପ ଗୋଟି ଜଳିଲେ ସେ ସବୁ ଦୃଶ୍ୟ ପାଇ ॥
ସେହି ଦେହ ଗୋଟି ଯେ ଅଟେ ଅନ୍ଧାରର ଘର ।
ଶ୍ରୀଗୁରୁ ଅଟନ୍ତି ଦୀପ ଏଭବ ସଂସାର ॥
ତାଙ୍କ ମନ୍ତ୍ର ଗୁଣମାନ ଶୁଣି ହେରୁ ହେଲା ।
ହେରୁ ପାଇବାରୁ କେତେ ଗୁଣ ଦୃଶ୍ୟ ହେଲା ॥
ଜନମ ହୋଇଲେ ପ୍ରାଣୀ ଅକାରଣେ ନାଶ ।
ଗୁରୁ ସେବା କଲେ ପ୍ରାଣୀ କାରଣେ ପ୍ରବେଶ ॥
ଗୁରୁ ସେବା କରିବାକୁ ସର୍ବେ ନ ପାରନ୍ତି ।
ଜଗତରେ କେତେକ ଶିଷ୍ୟ ଗୋଟିଏ ସେ ହୋନ୍ତି ॥
ବାରଟିଆ କୀର୍ତ୍ତନିଆ ତୁମ୍ଭେ ବାର ଦାସ ।
ଗୁରୁ ସେବା କଲ ତୁମ୍ଭେ ସ୍ତୁତି ଉପଦେଶ ॥
ଯେଉଁ ଜନମାନେ ଗୃହେ ଦିଅନ୍ତି ଯେ ସ୍ଥାନ ।
ସେ ଜନମାନେ ଲଭିଲେ ଉତ୍ତମ ତ ପୁଣ୍ୟ ॥
ସେ ଜନମାନେ କେମନ୍ତ ଗତି ଫଳ ପାଇ ।
ଏଥିର ସଂଶୟ ପୁଣ ଦେବ ଗୁରୁ କହି ।୩୦।
ବାହାରେ ମନ କପଟେ ଦେଲେଣ ଯେ ଥାନ ।
ପଶୁ ଜନ୍ମ ଲଭିଣ ସେ ବୁଲନ୍ତି ଯେ ବନ ॥
ଗୃହରେ ଆସନ ଦେଲେ ଗୋଲୋକରେ ବାସ ।
ରାଧା କୃଷ୍ଣ ସେବା କରି ପାଏ ପରିତୁଷ ॥
ଯାହାର ନ ଥିବ ଗୃହ ନାହିଁ ତାର ଦୋଷ ।
ଥିବା ଲୋକ କପଟରେ ପାପରେ ପ୍ରବେଶ ॥
ଭକତ ଯେଉଁ ସ୍ଥାନରେ ନାମ ଗୁଣ ଗାଇ ।
କୋଟି କୋଟି ବଂଶ ତାର ଉଦ୍ଧାର ହୁଅଇ ॥

କେତେ ଜନ୍ମର ତ ପାପ ହୋଏ ତାର କ୍ଷୟେ ।
ଶ୍ରୀ ଗୁରୁ ଦର୍ଶନେ ପାପ ଦୁଷ୍କୃତ ଯାଏ ।୩୯।
ଶୀତକୁ ଯେସନେ ଖର ତୃଷାକୁ ଯେ ଜଳ ।
ବୈଷ୍ଣବ ଗୁରୁ ଦର୍ଶନେ ଖଣ୍ଡେ ଅମଙ୍ଗଳ ।।
ତୁମ୍ଭେ ହେ ଚରଣ ଦାସ ମଠମାନଙ୍କରେ ।
ଉତ୍ତମ କରଣ ଗୃହ ରଖିବ ଭିତରେ ।।
ଏକ ବା ବଖୁରା ଦୁଇ ବଖୁରା ବା ଘନ ।
ଯତନ କରଣ ଥିବ ଗୃହର ପତନ ।।
ପତି ପତ୍ନୀ ଥିଲେ ତ ସ୍ୱସ୍ଥନେ ସେବା କର ।
ପତି ଯେ ନ ଥିଲେ ସେବା କରିବ ଯେ ସ୍ତ୍ରିଶ୍ ।।
ଗୃହ ଧର୍ମମାନ ସିନା ସ୍ତ୍ରିଶ୍ ରକ୍ଷା କରେ ।
ସ୍ତ୍ରିଶ୍ ଧର୍ମ ନ ରଖିଲେ ବଂଶ ନାଶ ତାରେ ।୪୦।
ପତି ପତ୍ନୀ ସୁଚରିତ୍ରେଣ ଗୁରୁସେବା କର ।
ସେ ସ୍ତ୍ରିଶ୍ୱକ ଲକ୍ଷ୍ମୀ ପୁଣ ଥାଆନ୍ତି ଆବର ।।
ସେ ସ୍ଥାନରେ ବସିଣ ଯେ ଚରଣ ଗୋପାଳ ।
ପ୍ରାଣୀମାନଙ୍କର ତହିଁ ଖଣ୍ଡି ଅମଙ୍ଗଳ ।।
ବାରଟିଆ ଦାସ ସାର ମୁକୁନ୍ଦ ଅନନ୍ତ ।
ପଞ୍ଚଶାଖା ମଧ୍ୟେ ସାର ରାମ କ୍ରୃଥ ଭକ୍ତ ।।
ସପ୍ତଶାଖା ମଧ୍ୟେ ନିରଞ୍ଜନ ଦେଖିଣ ତ ।
ଏହି ଛଡ଼ ଗୋପାଳେ ମନରେ ଧର ତତ୍ତ୍ୱ ।।
ଗୋପାଳ ଘରମାନଙ୍କେ କରିବ ଯେ ଥାନ ।
ସୁଦର୍ଶନ ମନ୍ତ୍ର ଗୋଟି କରିବ ଭଜନ ।୪୧।
ସ୍ତର ସ୍ତର ଧଇଲେ ଯେ ଆଠ ହେବ ତୁଲ ।
ତଳରେ ବସିବ ପୁଣି ନିଗୁଣ ଅମୂଲ୍ୟ ।।
ଉପରେ କପିକେତନ ବାନା ଯେ ଉଡ଼ିବ ।
ପଦ୍ମବୀଜ ରମାବୀଜ କାମ ଯେ ବସିବ ।।

ଗୋପୀଜନ ବଲ୍ଲଭାୟ ମନ୍ତ୍ର ମୂଳ ନାମ ।
ଏହୁ ଷର ବସିଲେ ଯେ ମନ୍ତ୍ରଙ୍କ ଉତ୍ତମ ॥
ଏହୁ ମନ୍ତ୍ର ଜପ କରି ଆନ ଦୋଷ ହର ।
ଗୋପାଳ କୁଳରେ ତୁମ୍ଭେ ସୁଖରେ ବିହର ॥
ଗୋପାଳଙ୍କ ଘରେ ଯେତେ କାଳମାନ ଥିବ ।
ଏ ମନ୍ତ୍ର ଜପିଲେ ସେହୁ ଛାଡ଼ି ପଳାଇବ ।୫୦।
ବାରହିଆ ଦାସମାନେ ସଂସାର ଗୃହରେ ।
ଏହୁ ମନ୍ତ୍ର ଜପିବ ଯେ ଦେଶ ଗ୍ରାମ ପୁରେ ॥
ଗୋପାଳ ପାଟଣା ପୁରେ ଏହୁ ଜପ କରି ।
ଆବର ତ ଖୋଳ କରତାଳ ଅଛ ଧରି ॥
ଭୁବନ ମଙ୍ଗଳ ଧୂନ ଅଛ ତୁମ୍ଭେ କର ।
ଯମ ଯେଉଁ ଧୂନ ଡରେ ଆଉ କାହା ଛାର ॥
କାଳମାନେ ଯମର ଯେ ଅଟନ୍ତି ଡଗର ।
ଅକାଳମାନେ ଅଟନ୍ତି ତାଙ୍କ ପରସ୍ପର ॥
ଭୂତ ପ୍ରେତ ଡାଏଣୀ ଯେ ବ୍ୟାଧି ପୁଣ ବାଦୀ ।
ଯମରଗଣ ହୋଇଣ ସଂସାରରେ ଖେଦି ।୫୫।
ରଜା ଯାକୁ ଡରଇ ପରଜା କେଉଁ ଛାର ।
ସୁଦର୍ଶନ ଚକ୍ରକୁ ଯେ ଡରନ୍ତି ଅସୁର ॥
ମହା ବଳବନ୍ତ ଅଟେ ସୁଦର୍ଶନ ରୂପ ।
ସୁଦର୍ଶନ ଧରିଛନ୍ତି ସଂସାରଏ କୃପ ॥
ବଳଭଦ୍ର ଅନନ୍ତ ବିରାଟ ସୁଦର୍ଶନ ।
ସିଦ୍ଧାଶ୍ରି ସ୍ଥା ଶ୍ରୀନା ଶେଷଦେବ ଆଠ ସ୍ଥାନ ॥
ଅଠ ବଳେ ବଳବନ୍ତ ସେହି ରାମ ନାମ ।
ସୁଦର୍ଶନ ନାମ ଧରି ଉଦ୍ଧାର ଅଧମ ॥
ମୁକୁନ୍ଦ ଅନନ୍ତ ରାମ ଭ୍ରୁଥ ନିରଞ୍ଜନ ।
ଦକ୍ଷିଣ ଚନ୍ଦ୍ର ଯେ ଛଡ଼ଜଣ ମନେ ଘେନ ।୬୦।

ବିପ୍ର ଶୁଦ୍ଧ ଶ୍ରାଦ୍ଧ ଯେ ବିଟାଳ ସ୍ଥାନମାନ ।
ଗୃହ ପରବେଶ ମନ କଳପନା ସ୍ଥାନ ॥
ଏ କାର୍ଯ୍ୟରେ ସ୍ଥାନମାନ ଦେବେ ଯେଉଁ ପ୍ରାଣୀ ।
ଚଳ ମନ୍ତ୍ର ଜପିବ ଯେ ଲକ୍ଷେକ ସେ ଚଣି ॥
ଚଳ ମନ୍ତ୍ର ନ ଜପିଲେ ପାପ ନ ଛେଦିବ ।
ଗୃହସ୍ଥକ ନ ତାରଣ ଯେ ଆପଣେ ନାଶିବ ॥
ଅଚ୍ୟୁତର ବଚନ ଯେ ଧର ଗୋପସୁତ ।
ଗୁରୁଭକ୍ତ ଗୀତା ଯେ ତୁମ୍ଭଙ୍କୁ ହେବ ହିତ ॥
ତୁମ୍ଭ ଅଂଶମାନ ଏହି ଗ୍ରନ୍ଥ ଯେ ପଢ଼ିବ ।
ଆଲୁଅ ହୋଇବ ତାଙ୍କୁ ସମସ୍ତ ଦିଶିବ । ୬୫ ।
ହରେକୃଷ୍ଣ ବୋଲଣ ଯେ ଗ୍ରଜନ ହୋଇବ ।
ସେ ଗ୍ରଜନ କାଲେ ଏହି ଗ୍ରନ୍ଥ ପ୍ରକାଶିବ ॥
ନଅକ୍ଷରେ ନାମ ଥିବ ଗୋପସୁତ ହୋଇ ।
କଛୁଦିନ ଗୁପତେଣ ପଢ଼ିବ ଯେ ସେହି ॥
ତାହାଙ୍କ ଠାବରୁ କଛୁ ପାଇବେ ଗୋପାଳ ।
ଗୁପତେଣ ଥିବ ଗ୍ରନ୍ଥ ଚନ୍ଦ୍ରାଙ୍ଗୀର କୂଳ ॥
ଆପଣେଣ ଅବଧୂତ ରୂପରେ ପ୍ରବେଶ ।
ପ୍ରବେଶ କରିବେ ପୁଣ କାଠୁଆର ଦେଶ ॥
ବ ଅକ୍ଷରେ ନାମ ହେବ ତାର ଅଂଶେ ରହି ।
ତହିଁ ପୁଣ ହୋଇବ ଯେ କଛୁ ଗୋପ୍ୟ ହୋଇ ।୭୦।
ତହୁଁ ଚଳିଯାଇ ଯେ ଗର୍ଗବୀ ଚନ୍ଦ୍ର ଦେଶେ ।
ଗୁପତ ରହିବ ଗ୍ରନ୍ଥ ସେ ଭୂମିର ପାଶେ ॥
ଗୋପ୍ୟ ଗ୍ରନ୍ଥ ଭକତ ଯେ ନ କରିବ ପୁଣ ।
ଏହା ଯେ କରିବ ଦୁଃଖ ପାଇବ ଆପଣ ॥
ପ୍ରାଣୀମାନେ ମନ୍ତ୍ରଶୂନ୍ୟ ତନ୍ତ୍ରଶୂନ୍ୟ ଥିବେ ।
ଯନ୍ତ୍ରଶୂନ୍ୟ ଜ୍ୟୋତିଶୂନ୍ୟ ଅବାଟେ ନଥିବେ ॥

ଛ୍ୱାଶୂନ୍ୟ ଧ୍ୟାନଶୂନ୍ୟ ହୋଇଥିବ ଘଟ ।
ରସ ଗୁଣ କଛୁ ସାଧି ହୋଇବେ ମୁରଟ ॥
ଏ ଗୁଣମାନ ନ ଧର ଶାସ୍ତ୍ରକୁ ନଢବେ ।
କାହିଁ ଏହା ପାଇବେ ସେ ଗୁରୁ କେବା ଦେବେ ॥
ସେହି ଗୁରୁ କୋଟିକେ ଗୋଟିଏ ଅବା ପାଇ ।
ମନ୍ତ୍ରଶିକ୍ଷା ଗୁରୁ ପୁଣ ବହୁତ ମିଳଇ ॥
ଅଷ୍ଟଗୁଣ ଜାଣି କର ଯେହୁ ଗୁରୁ ହେବ ।
ସେହି ଜନମାନଙ୍କ ତ ଗୁରୁ ସେ ବୋଲିବ ॥
ଅଷ୍ଟଗୁଣ ନ ଜାଣିଣ ଯେ କରନ୍ତି ଶିଷ୍ୟ ।
ସେହି ଶିଷ୍ୟମାନେଟି ଅଭାପନ୍ତମ୍ବ ଦୃଶ୍ୟ ॥
ଗୁରୁଶିଷ୍ୟ ପଥର ଯେ ନାବରେ ବସନ୍ତି ।
ଅନ୍ଧକୁ ଅନ୍ଧ ଯେସନେ ପଥ ବଢ଼ାବନ୍ତି ॥
ଏଣୁକର ଅଷ୍ଟଗୁଣ କରିବ ସାଧନ ।
ଉତ୍ତମ ଗୁରୁ ପୁଛିଣ ଦେବ ତାକୁ କର୍ଣ୍ଣ ॥
ଦଦରା ନାବେ ବସିଲେ ବୁଡ଼ି ମରେ ନର ।
ବଢ଼ ନାବେ ବସିଲେ ଜଳରୁ ହୋଏ ପାର ॥
ପାନ ଅଚ୍ୟୁତର କଥା ଅଟଇ ଏ ସାର ।
ଗୀତା ଭଗବତେ ବେଦ ଗ୍ରବାଣେ ପସ୍ବର । ୮୨ ।
ଇତି ଶ୍ରୀ ଗୁରୁଭକ୍ତି ଗୀତା କୃଷାସ୍ତ ଖଣ୍ଡେ ଗାନ ପୂର୍ଣ୍ଣ
କଥନେ ମନ୍ତ୍ରପ୍ରଚ୍ଛିଲ ନାମ ଅଷ୍ଟମ ପଟଳ ।

---

## ନବମ ପଟଳ

ଶ୍ରୀଗୁରୁ ଗୋସାଇଁ କହି କଥାଏ ପରୁଶ ।
ପ୍ରାଣୀମାନେ ଧନ ପୁତ୍ର ଥାନ୍ତି ଯେ ଅବୋଗ ॥
ମନରେ କଳପୁଥାନ୍ତି ଥିବ ମୋର ଅଂଶ ।
ସର୍ବଦା କ ରହିଥାନ୍ତି ତାହାଙ୍କର ବଂଶ ॥

ଏଥିରୁ ଯୋକାଏ ସନ୍ଧ ବସନ୍ଧ ପଶୁର ।
ପ୍ରାଣୀମାନେ ଯୋକାପ୍ସେ ତ ଆଆନ୍ତି ଅବୋର ॥
ମୋହର ବୋଲଣ ଧନ ନ ବଅନ୍ତ ପୁଣ ।
ନ ଦଅନ୍ତ ଗୁରୁ ଯେ ବୈଷ୍ଣବ ମୁଖରେଣ ॥
ଆପଣେ ନ ଭକ୍ଷି ସୁଖେ ଦୁଃଖେ ରୁଖା ଖାଇ ।
ପ୍ରାଣୀଙ୍କ ଦରଶ କର ନ ଦେଇ ନ ଖାଇ ॥
ସଙ୍ଗଧାକ ରହିଥାଇ ଧନ ପୁଣ କୁଳ ।
ଏଥକୁ କରୁଣା କର ଗୁରୁ ମନମଳ ॥
ଶୁଣ ହେ ଅନନ୍ତ ବସ୍ତ୍ର ମୁକୁନ୍ଦ ଆନନ୍ଦ ।
ପ୍ରାଣୀମାନେ ମିଛରେ ପଡ଼ନ୍ତି ହୋନ୍ତି ଅନ୍ଧ ॥
କ୍ଷୁଧା ନ ସହଣ ଯେବେ ପେଟର କାରଣେ ।
ଅନୁକ୍ଷଣେ ଧାଇଁ ଥାଇ ପେଟର ପୋଷଣେ ॥
ପେଟର ପୋଷଣେ ପୁଣ କାମର ପ୍ରବଳ ।
ସ୍ତ୍ରୀ ଆବୋରଣ ତ କରଇ ଗୃହ ସ୍ଥଳ ॥
ପୁତ୍ର ଜାତ ହୋଇଲେ ତ ମୋହ ମଦେ ମାତ ।
ପୁତ୍ରର ଜନ୍ମରେ ମୁହିଁ ସହିବ ସମ୍ପତ୍ତି । ୧୦ ।
ଏମନ୍ତେ ଝସର ଯୋକ ପରାଏ ମରଇ ।
ଗୁରୁପାଶେ ପଶିଣ ଯେ ପଥ ନ ଶିଖଇ ॥
ଅମଡ଼ା ପଥରେ ଗମି ପାଏ ବଡ଼ ଦୁଃଖ ।
ବୃଦ୍ଧକାଳେ ଧନ ପୁତ୍ର ନ ଦଅନ୍ତ ସୁଖ ॥
ସ୍ଥେରର ପରାଏ କର ଛଡ଼ାଇ ନଅନ୍ତି ।
ତରୁଣ କାଳେ ତ ପଥ ରଖିଣ ନ ଥାନ୍ତି ॥
ବୃଦ୍ଧକାଳେ ବଳ ବୁଦ୍ଧି ନାଶଯାଇ ତାର ।
କି ସେବା କରି ପାରବେ ଶ୍ରୀଗୁରୁ ପଦର ॥
ତରୁଣ କାଳରେ ଧନ ଅରଜୁଣ ଥିବ ।
ଏହି କାଳେ ଗୁରୁ ସେବ ପଥ ପଶୁରବ ॥

କୁଟୁମ୍ବ ନ ଥିବା କାଳେ ଅନ୍ନ ବସ୍ତ୍ରମାନ ।
ଶ୍ରୀ ଗୁରୁ ବୈଷ୍ଣବ ମୁଖେ ଦେବ ସେ ଭୋଜନ ॥
ଏହାଙ୍କୁ ନ ସେବ ଯେବେ ମୂଢ଼ ପଣେ ଥାଇ ।
ଧନ ପଣ ନାଶ କରି ନରକେ ଗମଇ ॥
ଅକାଳେ ଅକାଳ ପଡ଼ି ବଂଶ ଯାଏ ନାଶ ।
ମିଛକୁ ଚିର କରଣ ପ୍ରାଣୀ ଯାନ୍ତି ନାଶ ॥
କାହାର ନ ଥାଇ ଅଂଶ ଆପଣେ ମରଇ ।
ଯାହାର ଯେ ଏକଅଂଶ ବଢ଼ି କରି ଥାଇ ॥
କାହାର ତିନ ପୀଢ଼ିରେ କ୍ଷୟ ଯାଇ କୁଳ ।
ପାଞ୍ଚ ସାତ ପୀଢ଼ିରେ ଯେ ନାଶଯାଏ ମୂଳ । ୨୦ ।

ଧନ କୁଳ କଷ୍ଟଳ ଯେ ନୁହଇଟି ସତ ।
ମିଛରେ ଯେ ମରୁଥାନ୍ତି ମୂଢ଼ ଅପଣ୍ଡିତ ॥
ଯୁଗମାନଙ୍କରେ ଯେ ଦୁର୍ଭିକ୍ଷମାନ ପଡ଼ି ।
କେତେ କେତେ ବଂଶମାନ ତହିଁ ଯାନ୍ତି ମରି ॥
ଯୁଗମାନଙ୍କରେ ଯୁଦ୍ଧ ହାଣ ଗୋଳେ ମରେ ।
ଏହା ନ ଜାଣିଣ ପ୍ରାଣୀ ସେ ଧନ ଜନରେ ॥
ଚିର ଯେ ନୁହଇ ଧନ ଆବର ଜୀବନ ।
ଚିର ଯେ ନୁହଇ ପୁଣ ପୁତ୍ର ବନ୍ଧୁ ଜନ ॥
ଚିର ଏକା ଅଟଇ ଯେ ଗୁରୁ ସେବାମାନ ।
ଚିର ଏକା ଅଟଇ ଯେ ଶ୍ରୀକୃଷ୍ଣ ଭଜନ । ୨୫ ।

ଚିର ଏକା ଅଟଇ ବୈଷ୍ଣବ ସେବାଜାତ ।
ଚିର ଏକା ଅଟଇ ହସ୍ତରେ ଯା ଦଅନ୍ତ ॥
ଜପାସୁର ହିରଣ୍ୟ ରାବଣ କଂସବୀର ।
ଏମାନଙ୍କ ଧନ ଅଂଶ କାହିଁଛି ସଂସାର ॥
ବଳି ବେଣୁ ମାନଧାତା ଏମାନଙ୍କ ପଣ ।
ସଂସାରେ କି ରହିଛନ୍ତି ଯୁଗର ଶେଷେଣ ॥

ଶୁଣ ହେ ଅନନ୍ତ ଦାସ ମନେ ହେତୁକର ।
ବାଳକଙ୍କ ଖେଳଘର ପ୍ରାୟ ମନେଧର ॥
ଦେହ ବନ୍ଧଥିଲେ ବାଳ ଖେଳ କରୁଥିବ ।
ଚର ବୋଲି ଏହା ମନେ କେବେଁ ନ ଧଣିବ ॥
ଗୁରୁ ବୈଷ୍ଣବ ଯେ ସେବ ଗୃହ କରୁଥିବ ।
ଚର ବୋଲି ଧନ ଜନ ମନେ ନ ଘେନିବ ॥
ଥିଲେ ଭଲ ଗଲେ ଭଲ ଦେହ ସମର୍ପିବ ।
ହର ଯାହା ବନ୍ଧଥିବେ ଅବଶ୍ୟ ହୋଇବ ॥
ଧନ ଥିଲେ ପଣ ଥିଲେ ଗୁରୁଙ୍କୁ ପୂଜିବ ।
ପୁତ୍ର ବନ୍ଧୁ ପତ୍ନୀ ଆଦି ଦୋହିତା ଯେ ଥିବ ॥
ସମର୍ପିବ ଗୁରୁ ପାଦେ ମନର ହରଷେ ।
ତାଙ୍କ କଲ୍ୟାଣରୁ ଥିବ ଯେତେ କାଳ ଅଂଶେ ॥
ଗୁରୁ ବଇଷ୍ଣବ ଯେଉଁ ବର ଦେଇ ଯାଏ ।
ସେ ବର ପାଷାଣ ଗାର ପତ୍ରଏ ଅକ୍ଷୟେ ।୩୫।
ତୁମ୍ଭେ ବର ପାଇଲ ଯେ ଶ୍ରୀ ଗୁରୁ ମୁଖରେ ।
କଳ୍ପ ଦିନ ତୁମ୍ଭ ଅଂଶ ଥିବ ଏ ସଂସାରେ ॥
ସତ୍ୟ ଯୁଗେ ଯୁଗ୍ମ ମଧୁ ପଡ଼ି ନାଶ ଗଲେ ।
ଜପାସୁର ଆଦି କରି କେତେ ପ୍ରାଣୀ ମଲେ ॥
ତେଣସ୍ଥା ଯୁଗରେ ଯୁଗ୍ମ ମଧୁ ଯେ ପଡ଼ିଲ ।
ଚଉଦ ଦିନ ଚଉଦ ବରଷ ହୋଇଲ ॥
ରଘୁନାଥ ବନବାସ କଲେ ସେ ଦିନରେ ।
ବାଲୀ ଆଦି ରାବଣ ଯେ ମଲେଟି ଅସୁରେ ॥
ଦୁର୍ଭିକ୍ଷରେ କେତେ କେତେ ଅଂଶ ଗଲେ ନାଶ ।
ପ୍ରାଣୀମାନଙ୍କର କେତେ ନାଶ ଗଲେ ବଂଶ ।୪୦।
ଦ୍ୱାପର ଯୁଗରେ ଯୁଗ୍ମ ମଧୁ ଯେ ପଡ଼ିଲ ।
ଗୋପରେ ଶ୍ରୀକୃଷ୍ଣ ଆଠ ବରଷ କଟିଲ ॥

ଆଠ ବରଷରେ ପ୍ରାଣୀ କେତେକ ଯେ ମଲେ ।
କଂସ ଆଦି କରି ଅଷ୍ଟ ମଲ୍ଲ ନାଶ ଗଲେ ॥
ଯଦୁବଂଶ ନାଶ ଗଲେ ସେ ଯୁଗରେ ପୁଣ ।
କାହିଁ ତାଙ୍କ ଦେଖୁଅଛ ଧନ ଜନ ପଣ ॥
ଏହି ରୂପେ ଧନ ଜନ ଚିର ଯେ ନୁହଇ ।
କାହୁ ଧନ ବଢ଼ିକରି ପୁଣି ନାଶ ଯାଇ ॥
ବାର ଯେ ବରଷ ତେର ଦିନ ଯେ ଓଳିଏ ।
ଯୁଦ୍ଧମଧ୍ୟ ପଡ଼ିଲ ଯେ ସେ କାଳ ସମୟେ । ୪୫ ।
ଗ୍ରସ୍ୟା ଜୋଇ ସହସ ରଜା ଲଭିଲେ ମରଣ ।
ଦୁର୍ଭିକ୍ଷ ବାର ବରଷ ହେଲେ ରଣଭଣ ॥
ଦୁର୍ଭିକ୍ଷ କାଳରେ ପ୍ରାଣୀ ଯେତେ ଗଲେ ମରି ।
କାହିଁ ତାଙ୍କ ରହିଅଛି ଧନଜନ ଶ୍ରିଶ୍ରୀ ॥
ଏହା ନ ଜାଣିଣ ପ୍ରାଣୀ ସତ ମଣି ଥାଇ ।
ଦଇବ ସଂଯୋଗେ ପୁଣ ସର୍ବ ନାଶ ଯାଇ ॥
ମାୟା ଅନ୍ଧ ଜଡ଼େ ପଡ଼ି ପ୍ରାଣୀ ମଣେ ସତ ।
ନିରନ୍ତରେ ବୋଲୁଥାଇ ମୋର ଧନ ସୁତ ॥
ଧନ ମଦ ଜନ ମଦ ପଣ ମଦ ପାଇ ।
ବିଦ୍ୟା ମଦ କୁଳ ମଦ କାମ ମଦେ ଭାଇ । ୫୦ ।
ଏହି ମଦେ ମାତିକରି ଗୁରୁଙ୍କୁ ନ ସେବେ ।
ଗୁରୁ ପାଶେ ନ ବସଇ ବୈଷ୍ଣବ ନ ସେବେ ॥
ଏ ମଦ ଏଡ଼ିଣ ତୁମ୍ଭେ ଚରଣ ମହନ୍ତ ।
ଗୁରୁପାଦେ ସେବ ହେଲ ବୈଷ୍ଣବଙ୍କ ମତ ॥
ଗୁରୁ ସେବା କରିବାରୁ ମନ ନିରମଳ ।
ଗୋଲୋକ ଆୟୁଧ ହେଲ ତୁମ୍ଭ କରସ୍ଥଳ ॥
ଓଡ଼ରାଷ୍ଟ୍ରେ ତୁମ୍ଭର ଯେ କଥା ରହିଥିବ ।
ତୁମ୍ଭର ସକାଶୁ ଗୋପକୁଳ ଉଦ୍ଧରିବ ॥

କଳି ମଧ୍ୟେ ଯୁଗ୍ମମଧ୍ୟ ପଡ଼ିବ ଯେ ପୁଣ ।
କୀରକିଶୋର ରାଜା ଯେ ହୋଇଥିବ ଜାଣ ॥
କଲଙ୍କି ଜନମ ହେବେ ସେ କାଳେ ଗୋସାଇଁ ।
ମକୁନ୍ଦ ରାଜନ ଦେବ ଏକ ସ୍ଥଳଶନ୍ଧି ॥
ବ୍ରାହ୍ମଣ ଯେ ବିଷ୍ଣୁ ମିଶ୍ର ଅପୁତ୍ରିକ ଥିବ ।
ଆପଣେ ଜନମ ସେହ୍ନୁ ଅଟେ ବସୁଦେବ ॥
ବାସୁ ଯେ ପଳେଇ ବୋଲି ଗୋପାଳ ତା ସଙ୍ଗ ।
ବିଷ୍ଣୁ ମିଶ୍ର ସଙ୍ଗେ ହୋଇଥିବ ଅଙ୍ଗସଙ୍ଗ ॥
ଦେଇ ଯେ ବ୍ରାହ୍ମଣୀ ବୋଲି ବିଷ୍ଣୁ ମିଶ୍ର ନାରୀ ।
ଯଶୋଦା ବୋଲିଣ ବାସୁ ପଳେଇ କୁମାରୀ ॥
ଦୁଇ ସ୍ତ୍ରୀ ଅଟନ୍ତି ଯେ ସଙ୍ଗାତ ସେ ଜାଣ ।
ବିପ୍ର ଘର ଗୋପ ଘର ନାହିଁ ଭିନ୍ନାଭିନ୍ନ ॥
ଦେଇର ଗର୍ଭରେ ପ୍ରଭୁ ଜନମ ହୋଇବେ ।
ବରଷ ଦିନରେ ମାତା ପରାଣ ଛାଡ଼ିବେ ॥
ଦୁଇ ଯେ ବରଷ ଗୋପାଳୁଣୀ ଯେ ପାଳିବ ।
ବିଷ୍ଣୁ ମିଶ୍ର ପୁଣ ଯେ ପରାଣ ଛାଡ଼ିଯିବ ॥
ଛଡ଼ ବରଷକଠାରେ ଗୋପାଳୁଣୀ ହତ ।
ସପତ ବରଷଠାରେ ପଲଲ୍ ପଞ୍ଚତ୍ୱ ॥
ସପତ ବରଷେ ନଇରୃତକୁ ଗମନ ।
ତହିଁ ନଦୀକୂଳରୁ ବିଜୟେ ଭଗବାନ ॥
ସମଲ ଗ୍ରାମ ଯେ ପୁଣ ତେଜି କରି ହରି ।
ଆତ୍ମା ତପ କରିବେ ସୁବର୍ଣ୍ଣ କୂଟ ଗିରି ॥
ଶ୍ରୀ ନୀଳ କନ୍ଦରେ ଖେଚର ଭୂର୍ତ୍ତିଣ ଗୋସାଇଁ ।
ତପସ୍ୟା କରୁଣ ଥିବେ ଅନନ୍ତ ଯେ ଭୁଇଁ ॥
ଚିରକାଳ ତହିଁରେ ହେ କରି ଆତ୍ମା ଧ୍ୟାନ ।
କଲଙ୍କି ରୂପକୁ ସୁଖ ଲାଗିବ ଯତନ ॥

ଏମନ୍ତ ହୋଇଣ କୃଷ୍ଣ ଲୁଚିକରି ଥିବେ ।
ପ୍ରାଣୀମାନେ ଅତି କଷ୍ଟେ ଦିନ ଯେ ବଞ୍ଚିବେ ॥
ରଘୁନାଥ ବନେବାସ କୃଷ୍ଣ ଗୋପେ ଜାତ ।
କଳଙ୍କି ରୂପ କଳିରେ ହୋଇବ ଗୁପତ ॥
ଯୁଗକୁ ଯୁଗ ଏ ଲୀଳା କରନ୍ତି ଗୋସାଇଁ ।
ନଷ୍ଟ ପ୍ରାୟେ ଲୀଳା କରି ଭାଙ୍ଗି ଗଢ଼ୁଥାଇ ॥
ହଟିଆ ନାଗର ହସ୍ତୀ ଜାଣଇ ଅପାର ।
ଗଢ଼ି ନ ଭାଙ୍ଗିଲେ ସମ୍ଭାଳନ୍ତା କେ ସସାର ॥
କଳି ଶହେ ବରଷ ଯେ ପ୍ରାଣୀମାନେ ରହୁ ।
ମୁଁ କାର ଗରବେ ପ୍ରାଣୀ କହୁ ନ ଚହୁଇ ॥
ଗଢ଼ି ନ ଭାଙ୍ଗିଲେ ପୃଥ୍ୱୀ କାହିଁ ଠାବ ହୋନ୍ତା ।
ଏଣୁକରି ନାଶ କଲେ କରମ କରତା ॥
ବୀର କିଶୋରର କାଳେ ଉତ୍କଳ ଯେ ଦେଶ ।
ପଶ୍ଚିମ ଦିଗରେ ଘୋଡ଼ା ହୋଇବ ପ୍ରବେଶ ॥
ଦକ୍ଷିଣ ଦିଗୁଁ ଆସିବେ ତେଲଙ୍ଗା ଯେ ଜାଣ ।
ଉତ୍ତର ଦିଗରେ ଜଗି ଥିବେ ଯେ ପଠାଣ । ୭୫ ।
ସେ କାଳେ ଦଶ ବରଷ ଦେଢ଼ମାସ ଲେଖି ।
ପ୍ରାଣୀମାନେ ହୋଇବେ ଅନେକ ଯହିଁ ଦୁଃଖୀ ॥
ଦୁର୍ଭିକ୍ଷରେ ଥୋକେ ଜନ ହୋଇବେ ଯେ ନାଶ ।
ହାଣ କାଟରେ ମରିବେ ଅନେକ ମନୁଷ୍ୟ ॥
ଜାଙ୍ଗୁ ଯେ ମାଣ୍ଡିଆ ସୁଆଁ କୋଦୁଅ ବାଜ୍ରଙ୍ଗା ।
ଗଢ଼ଆ ପଥୁରି କରିଥିବେ ଘର ଭଙ୍ଗା ॥
ଶୁଦ୍ଧ ଶ୍ରାଦ୍ଧ ମାନ କେହୁ ନ କରି ପାରିବେ ।
ଥିଲା ପ୍ରଜାଧନ ରାଜା ବନ୍ଧକରି ନେବେ ॥
ଦେଢ଼ କାହାଣ ହୋଇବ ଧାନ ଯେ ଗଉଣୀ ।
ବନ୍ଧଣ ରଖିଣ ଥିବେ କୃପଣ ଯେ ପ୍ରାଣୀ ॥ ୦ ।

ତାହାଙ୍କର ଧନ ପୁଣି ଟସକର ନେବ ।
ଦୁଃଖୀ ସୁଖୀ ଦରିଦ୍ର ଯେ ହୋଇବେଟି ସଙ୍ଗ ॥
ଏକା ବସ୍ତ୍ର ପିନ୍ଧିଥିବେ ଦୋସରି ଆଉ ନାହିଁ ।
ମଲଣି ପିନ୍ଧଣିଥିବେ କ୍ଷୀଣ ତନୁ ବନ୍ଧ ॥
କୋଡ଼ିଏ କାହାଣ ହେବ ଭୂମି ମାଣ କର ।
ତରେ ଗ୍ରାମ ଛାଡ଼ି ଯିବେ ଶୂଦ୍ର ଯେତେ ନର ॥
ସେହି ଦିନଠାରୁ ଜାଣ ଭୃଟିବ ସଂସାର ।
ଗ୍ରାମକେ ଗ୍ରାମକେ ଥିବ ଏକ ଏକ ନର ॥
କୃପଣ ଲୋକ ସେ କାଳେ ମରିବେ ଅପାର ।
ମିଛୁଆ ଜନମାନେ ଯେ ହେବେ ନାରଖାର । ୮୫ ।
ଅତିଥି ନିରଣ ଗୁରୁ ଦକ୍ଷିଣା ବୁଡ଼ିବ ।
ଏହି ପ୍ରାଣୀମାନେ ଯେ ସେ କାଳେ ନାଶଯିବ ॥
ମାତା ପିତା ଛାଡ଼ି କରି ଗୃହ କରୁଥିବେ ।
ସେହି ଜନ ଅକାଳରେ ନିଶ୍ଚୟ ମରିବେ ॥
ପରେ କଳତ୍ରର କରି ଗୃହ କରୁଥିବ ।
ସ୍ନେହ ମାଣେ ଏକା ନର ଅଂଶ ନ ରହିବ ॥
ଗୋଦଣ୍ଡା ହରଣ ବଣା କୃଷିରେ ନିରଣ ।
ସେହି ଜନମାନଙ୍କର କୃଷି ଯିବ ନାଶ ॥
ପରସ୍ତ୍ରୀ ଶ୍ରୀ ହରୁଥିବେ ଯେତେକ ଯେ ପ୍ରାଣୀ ।
ଅଂଶମାନ ତାହାଙ୍କର ନ ରହିବ ପୁଣି । ୯୦ ।
ବହୁତ ଆହାରୀମାନେ ମରିବେ ସେ କାଳେ ॥
ଚଉ ଦୃଢ଼କଲା ଜନ ତରିବେ ସେ କାଳେ ॥
କଳେ ଚଳେ ଫଳେ ଜଳେ କରିବେ ଆହାର ।
କଳିଯୁଗେ ଦୁଃଖେ ସୁଖେ ପୋଷିବେ ଉଦର ॥
ଅକ୍ଷର ଉକ୍ଷର ଯେ ରକ୍ଷର ନକ୍ଷରେ ।
ଏତେ ଅଂଶ ରହିବେ ତ ସେ କଳିଯୁଗରେ ॥

ମ ଅକ୍ଷର ଉ ଅକ୍ଷର  ନକ୍ଷର ପଥରେ ।
ଏତେ ପୀଡ଼ା ରହିବ ତ ଏ କଳିଯୁଗରେ ॥

ମୁକୁନ୍ଦ ଅନନ୍ତ ଦୁହେଁ ସଯୋଗ ଧାରଣ ।
ଯାହା ପଶୁଚଲେ ତାହା ହେତୁ ମନେ ଶୁଣ ॥

ବଇରାଗୀ ଜନ ଯଦ ଯତ ସତ ଧରେ ।
ସେହି ଜନ ସୁଖ ପାନ୍ତି ଏ କଳିଯୁଗରେ ॥

ଗୃହସ୍ଥା କଟେଣ ଯଦ ବିଷୟ ଅବର ।
ବିଷୟା ଧନରୁ କିଛି ପରମାର୍ଥ ଜର ॥

ସେହି ଜନମାନେ ଯେ କଳିରେ ପାନ୍ତି ସୁଖ ।
ଏ ହେତୁ ନ କଲେ ପ୍ରାଣୀ ପଛେ ପାନ୍ତି ଦୁଃଖ ॥

ମୁକୁନ୍ଦ ଅନନ୍ତ ବସ୍ତ୍ର ଗୋବନ୍ଦ ଆନନ୍ଦ ।
ସୁଦାମ ବାଳକ ଛଡ଼ ଗୁରୁ ପଦେ ବନ୍ଦ ॥

କିଛିଦନ ତୁମ୍ଭ ଛଡ଼ ଅଂଶ ରହିଥିବ ।
ଖୋଲ କରତାଳ ଜଣ ମଗେଣ ଖାଇବ । ୧୦୦ ।

ଯେତେଦୂର ଗମିବ ତୁମ୍ଭର ତେତେ ଘର ।
ସସାରଜନ ତୁମ୍ଭଙ୍କୁ କରିବେ ଆଦର ॥

ଗୋପାଳ ପୁଅ ଯେ ତୁମ୍ଭ ନାମ ସେ ଅଟଇ ।
ପୁଅଠାରେ ପିତା ମାତା ଆନ କି କରଇ ॥

ସସାରେ ଯେତେକ ସ୍ତ୍ରୀ ସବେ ତୁମ୍ଭ ମାତା ।
ସସାରେ ଯେତେ ପୁରୁଷ ଜ୍ଞାନ କର ପିତା ॥

ମାତା ପିତା ପ୍ରାପ୍ତେ ଅନ୍ନ କରିଣ ଖାଇବ ।
ଅକାଳ ଦୁର୍ଭିକ୍ଷ ତୁମ୍ଭଠାବକୁ ନ ଯିବ ॥

ବଣିଜକୁ ଚୁମ୍ବି ତୁମ୍ଭ ଖୋଲ କରତାଳ ।
ହେତୁ ମନେ ଧର ତୁମ୍ଭେ ବାରଟି ଗୋପାଳ ॥

ହନୁଥାନ ପବନ ବୃନ୍ଦାବନ ଯେ ମାଥିୟା ।
ଯାଦବ ମଧୁ ଯେ ଥିବ ମନେ ହେତୁ କର ॥
ଅଚ୍ୟୁତ ବଚନ ପାଳି ସଂସାରେ ବହୁର ।
ଗୁରୁଭକ୍ତ ଗୀତା ଗ୍ରନ୍ଥ ଜଗତ ବଚ୍ଚର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଶୂନ୍ୟଖଣ୍ଡେ ଯୁକ୍ତ ମଧ୍
ଜଳ ଅଗମ ନାମ ନବମ ପଟଳ ।



## ଦଶମ ପଟଳ

ମୁକୁନ୍ଦ ଅନନ୍ତ ବେନ ପଚ୍ଚୁରୁଛୁ ସନ୍ଧି ।
ତତ୍ତ୍ୱ ଗୁରୁ କହିଲ ଯେ ତନ୍ତ୍ର ମନ୍ତ୍ର ଭେଦ ॥
ଦେହାଦର ଗୁରୁ କହ ସଂସାରେ ବଖାଣ ।
ସଂସାରଜନ ଜାଣିବେ ଯେଉଁ ପରମାଣ ॥
ତୁମ୍ଭର କେ ଦେହ ଗୁରୁ କେଉଁ ମନ୍ତ୍ର ଦେଲେ ॥
ଏ କଥା ଜାଣିଣ ଥିବୁ ତୁମ୍ଭ ମୁଖୁଁ ଭଲେ ॥
ଧରମୁ ଭରଥ ତୁମ୍ଭେ ବିଷ୍ଣୁ ଦେବ ଶୁଣ ।
ବନ୍ଧ ନିରଞ୍ଜନ ଯେ ଦକ୍ଷିଣ ଚନ୍ଦ୍ର ପୁଣ ॥
କମାର କୁମ୍ଭାର ଯେ ବଣିକ ହେତୁ କର ।
ବିପ୍ର ଆଦି କରି ଆମ୍ଭ ସୁତ ଦ୍ୱାର ସାର ॥
ମୁକୁନ୍ଦ ଅନନ୍ତ ଯେନ୍ତୁ ପବନ ହନୁଥାନ ।
ଗୋବିନ୍ଦ ଆନନ୍ଦ ବସ୍ତ୍ର ଶୁଣ ବୃନ୍ଦାବନ ॥
ଯାଦବ ସୁଦାମ ମଧୁ ମଥୁରେ ଯେ ବାର ।
ଭୃଥ ରାମ ବେନର ଯେ ଅଟେ ତୁମ୍ଭେ ସାର ॥
ଶୁଣ ଯାହା ପଚ୍ଚରିଲ ହେତୁ କର ମନ ।
ଆମ୍ଭର ବିହାର ଠଳନ୍ଧଣା ନଗ୍ର ସ୍ଥାନ ॥

ଚଣ୍ଡଚୋଲା ନଦୀରୁ ଲବଣ ଧାର କୂଳ ।
ଦୀନବନ୍ଧୁ ପିତାଙ୍କର ଚନ୍ଦ୍ରରେ ଯେ ଆଲ ॥
ପଦ୍ମା ନାମେ ମାତା ମୋର ସେ ସ୍ଥାନରେ ଘର ।
ବଢ଼ୀ ପଢ଼ାଇଣ ଥିଲେ ବିପ୍ର ସୁଜ୍ଞବର ॥
ଗ୍ରାମର ପଶ୍ଚିମ ଭାଗ ଅଶ୍ୱତ୍ଥ ମୂଳରେ ।
ପାଞ୍ଚଗୋଟି ବୃକ୍ଷ ବସିଥିଲୁ ସେହିଠାରେ ॥
ଅପୂର୍ବ ମୂରତ ଶୋଭା ଗଉର ସୁନ୍ଦର ।
ବିଶ୍ରାମ କଲେକ ଆସି ସେହି ଯେ ସ୍ଥାନର ॥
ପଚ୍ଛରିଲେ ତୁମ୍ଭର ଯେ ମାତା ପିତା କେହୁ ।
ଡାକିଆଣ ଆମ୍ଭର ଯେ କଥା ରହିଥାଉ ॥
ଆଜ୍ଞା ପାଇ ଗଲି ମୁହିଁ ପିତାଙ୍କର ପାଶ ।
ଦୀନବନ୍ଧୁ ପିତା ମୋର ହୋଇଲେ ପ୍ରବେଶ ॥
ପିତାକୁ ବୋଇଲେ ଏହୁ ବାଳକ ଆମ୍ଭର ।
ହରି ନାମ ଦେବୁ ଆମ୍ଭେ ଶରଧା ମନର ॥
ସନମତ କରି ପିତା ଗୃହକୁ ଚଳିଲେ ।
ହରି ଦୀକ୍ଷା ପୂଜା ବିଧିମାନ ସଜାଡ଼ିଲେ ॥
ବୈଶାଖ ଶୁକଳପକ୍ଷ ଏକାଦଶୀ ତିଥି ।
ସୋମବାର ମାହେନ୍ଦ୍ର ଯେ ଯୋଗ ବାର ସ୍ଥିତ ॥
ହରିନାମ ଦେଲେ ମୋତେ ସେ ଦିନରେ ପୁଣ ।
ପିତା ପଚ୍ଛରିଲେ ପ୍ରଭୁ କିସ ତୁମ୍ଭ ନାମ ॥
କାହିଁ ତୁମ୍ଭ ଘର ବୃତ୍ତି କାହିଁ ତୁମ୍ଭ ସ୍ଥାନ ।
କେଉଁଠାରେ ଏ ବାଳକ କରିବେ ଦର୍ଶନ ॥
ନୀଳଗିରି ଦକ୍ଷିଣ ଯେ ସମୁଦ୍ର ତଟରେ ।
ଚୈତନ୍ୟ ମଣ୍ଡଳ ବୋଲି ପଚ୍ଛରି ସେଠାରେ ॥
ଆମ୍ଭ ଦରଶନ ହେବ ସେହିଠାରେ ପୂର୍ବ ।
ଆମ୍ଭ ଜନ ବୋଲି ଆମ୍ଭେ ଆଦରିବୁ ଜାଣ ॥

ଆମ୍ଭେ ଅଟୁ ଶଚୀ ପୁତ୍ର ଚୈତନ୍ୟ ଠାକୁର
ଶରଧା ବଳାଇ ଆମ୍ଭ ପୁତ୍ରଠାରେ ଭୋର ॥
ଅନନ୍ତକ୍ଷେ ନୀଳଗିରି ଠାବରୁ ଅଇଲୁ ।
ଓଡ଼ରାଷ୍ଟ୍ର ଉଦ୍ଧାରଣେ ଏ ପୁତ୍ରକୁ କଲୁ ॥
ଗଉର ବର୍ଣ୍ଣ ଘୁଞ୍ଚାଇଣ କୃଷ୍ଣବର୍ଣ୍ଣ ହେଲେ ।
ତ୍ରିଭଙ୍ଗି ହୋଇଣ ବଂଶୀ ହସ୍ତରେ ଧଇଲେ ॥
ବେନି ଭୁଜେ ଧଇଲେ ସେ ଦଣ୍ଡକମଣ୍ଡଳ ।
ଆର ବେନି ଭୁଜେ ଅଛୁ ବାଦ୍ୟେଁଶର ହୁଳ । ୨୫ ।
ଅପୂର୍ବ ରୂପ ଦେଖିଣ ପଡ଼ି ପାଦତଳ ।
ସ୍ୱୟଂ କୃଷ୍ଣ ବଜେ କଲ ସୁଭାଗ୍ୟ କର୍ମର ।
ଅପୂର୍ବ ମଣୋହି ପଞ୍ଚା କଲେକ ଭୋଜନ ।
ଏମନ୍ତ ହୋଇଣ ଆମ୍ଭ ଗୁରୁଙ୍କ ଦର୍ଶନ ॥
ହରେକୃଷ୍ଣ ମନ୍ତ୍ର କହି କାମବୀଜ ଦେଲେ ।
କ୍ଲିଂ ବୀଜରେ ରାଧା ମନ ବୁଝାଇଲେ ॥
ଆଦ୍ୟ ନାମ ତୁମ୍ଭର ଅଟଇ ପୁଣ କପ ।
ଏ କଥା କହିବା ହେତୁ ଶୁଣିଥାଅ କ୍ଷିପ ॥
ଆମ୍ଭନାମ ଗୌରହରି ସଂସାରେ ବିହରି ।
କଳିକାଳ ଦେଖିଣ ଯେ ଧଇଲୁ ଏ ଶରୀ । ୩୦ ।
ବଇରାଗ ବେଶ ଧରି ଡୋର କଉପୁନି ।
ଆମ୍ଭ ଭେକ ଧରି ସର୍ବେ ବିହରି ମେଦିନୀ ॥
ଆବର ଅଚ୍ୟୁତ ତୁମ୍ଭେ ରାହାସ ରହିବ ।
ଓଡ଼ରାଷ୍ଟ୍ରେ ତୁମ୍ଭର ଯେ କଥା ରହିଥିବ ॥
ଆଜ୍ଞା ଦେଇ ବିଜେକଲେ ଶ୍ରୀ ନୀଳକନ୍ଦର ।
ତାଙ୍କ କରୁଣାରେ ପଦ ସ୍ଫୁରିଲା ଅପାର ॥
ଶ୍ରୀଗୁରୁ ମୋ ଚଇତନ୍ୟ କରୁଣା ଅମୃତ ।
ହେତୁ ମନେ ଧର ତୁମ୍ଭେ ବାର ଗୋପସୁତ ॥

ଆମ୍ଭ ଗୁରୁ ଗୋର ଚନ୍ଦ୍ର ରାମ ଆମ୍ଭ ଶିଷ୍ୟ ।
ରାମ ଶିଷ୍ୟ ଅନନ୍ତ ମୁକୁନ୍ଦ ଦୁଇ ଦାସ । ୩୫ ।

ଦୋହାଦ ଗୁରୁ ଈଶ୍ୱର ମନେ ଧରିଥିବ ।
ଉତ୍ତମ ଜନ ଦେଖିଲେ ଏହା ବଖାଣିବ ॥
ଥୋକେ ଲୋକ ଶୁଣିଲେ କରିବେ ଉପହାସ ।
ଏଣୁକରି ମୂଢ଼ ଜନେ ନକରି ପ୍ରକାଶ ।
ଚଇତନ ଆଜ୍ଞା ଧର ଆମ୍ଭ ଆଜ୍ଞା ସାର ।
ରାମ ଆଜ୍ଞା ଶିରେ ଧରି ସସାରେ ବିହର ॥
ଖୋଲ କରତାଳ ଧରି ରହାସ ସୁମରି ।
ରହାସେ ପଢ଼ିବ ରାଧା କୃଷ୍ଣ ନାମ ସ୍ମରି ॥
ଗୋପାଳ ମନ୍ତ୍ର ଧରିଣ ଗୋରା ରୂପ ଧ୍ୟାନ ।
ରହାସ ରହିବ ଲକ୍ଷ୍ୟେ କରି ବୃନ୍ଦାବନ । ୪୦ ।

ତାଳ ଯେ କୁମୁଦ ବେଲ ଖଦିର କାମୋଦ ।
ଭଦ୍ରବ ଭାଣ୍ଡିର ଲୋହ୍ୱ ଫଣୀ ମଧୁ ଭେଦ ॥
ଶ୍ରୀ ଗୋପାଳ ଲୀଳାକୁ ତୁମ୍ଭେ ଧ୍ୟାନ ପଥେ ଧର ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ବିହର ॥
ଗୁରୁ ଆଜ୍ଞା ଶିରେ ଧରି ମୁକୁନ୍ଦ ସନ୍ତୋଷ ।
ଆଜ୍ଞା ଶିରେ ଧରି ତୋଷ ହେଲେ ସର୍ବ ଶିଷ୍ୟ ॥
ଅଚ୍ୟୁତ ବଚନ ହେତୁ ଧର ଗୋପ ପୋଷ୍ୟେ ।
ସଂସାରରେ ଯଶ ରହିଥିବ ହେ ଥୋକାସ୍ୟେ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ଶ୍ରୀ ଗୁରୁ
ପ୍ରଣାଳୀ କଥନେ ନାମ ଦଶମ ପଟଳ ।

## ଏକାଦଶ ପଟଳ

ନମସ୍ତେ ଗୁରୁଦେବ ନନ୍ଦ । ସନ୍ଥ ସାଧୁ ଯେ ଧରେ ବେଦ ॥
ସୁଜନ ସାଧୁ ବୈଷ୍ଣବନ୍ତ । ବୈରାଗ୍ୟ ମହନ୍ତ ମହନ୍ତ ॥
ଏ ଆଦ୍ୟ ଲକ୍ଷଣ କହ । ଫିଟିବ ମନ ମାୟା ମୋହ ॥
ସତ୍ୟ କହିବ ନିତ୍ୟ ରୁଣ୍ଡେ । ଶାନ୍ତରେ ଥିବ ହୃଦପିଣ୍ଡେ ।
ଦୟା ଯେ କରିବ ହସ୍ତରେ । କ୍ଷମା କରିବ ଦୋଷୀଠାରେ ॥
ଧର୍ମ କରିବ ଅନ୍ନ ଦେଇ । ଦୁଃଖୀ ଦରିଦ୍ରଙ୍କୁ ଭୁଞ୍ଜାଇ ॥
ଏ ପାଞ୍ଚ ଲକ୍ଷଣ ଯାହାର । ସନ୍ଥ ବୋଲିବା ସେହୁ ନର ॥
ଏ ପାଞ୍ଚ ଗୁଣ ହୃଦେ ଧରି । ସଂସାରେ ସୁଖେଣ ବିହରି ॥
ସନ୍ଥ ଲକ୍ଷଣ ତୁମ୍ଭଠାରେ । ଅନନ୍ତ ଧର ହେ ହୃଦରେ ॥
ଯାନ ଅଚ୍ୟୁତ କହେ ସାର । ମାୟା ମୋହରୁ ହୁଅ ପାର ॥
ଏ ଖୋଳ କରତାଳ ଧରି । ଆନନ୍ଦେ କୃଷ୍ଣ ନାମ ସ୍ମରି ॥
କୃଷ୍ଣ ମନ୍ତ୍ରକୁ ଜପକରି । ଶାନ୍ତ କରିବ ଚିତ୍ତେ ସ୍ମରି ॥
ହରେକୃଷ୍ଣ ଯେ ମନ୍ତ୍ର ଜପି । ସତ୍ୟ କହିବ ମୁଖେ ଥାପି ॥
ଠାକୁରାଣୀ ଯେ ମନ୍ତ୍ର ଧରି । କ୍ଷାନ୍ତି ରଖିବ ଧର୍ମ କରି ॥
ଗୋପାଳ ରାହାସେ ମିଳିବ । ଏ ଧର୍ମ କଷ୍ଟ ଦନ ଥିବ ॥
ତାରକ ମନ୍ତ୍ର ସୁମରଣ । ଅନ୍ନ ଭୋଜନ ଦେଇ ପୁଣ ॥
ଦୟାରେ ଅଟଇ ଏ ସାର । ଏ ଗୁଣ ବହୁ ଗୃହ୍ୟ କର ॥
ଯୁଗଳ ମନ୍ତ୍ରକୁ ଗୁଣିମ । ଦୋଷୀର ଦୋଷ କର କ୍ଷମ ॥
ଅନନ୍ତ କହିଲୁ ହେ ତୋରେ । ଏ ବର ଦେଲୁ ହରଷରେ ॥
ବୃଦ୍ଧ ଗଙ୍ଗାର ତଟେ ଘର । ବାଲିଗ୍ଣ ନଗରରେ ବିହର । ୧୦ ।
ଚାରି ପିଢ଼ି ତ ସୁଖେ ଯିବ । ପାଞ୍ଚ ପିଢ଼ିରେ ଦୁଃଖ ହେବ ॥
ସଂସାରେ ସର୍ବ ଜନ ଦୁଃଖ । ସେଠାରୁ ଆଉ ନାହିଁ ସୁଖ ॥
ସାଇରେ କେହି ନ ରହିବେ । ପିତାକୁ ପୁତ୍ର ଯେ ତେଜିବେ ॥

ଗୁରୁଷ୍ଠ ଖରିସା ସ୍ତ୍ରୀଡ଼ିବେ । ପେଟ ନ ପୂରେ ବୁଲୁଥିବେ ।
ପୁତ୍ରକୁ ବିକିବ ଯେ ବାପ । କଳି କାଳରେ ବଡ଼ ତାପ । ୨୫ ।
ପରଜା ଧନ ରାଜା ନେବ । ନିର୍ଦ୍ଧସ୍ୱା ହୁଟଦେଣ ମାରିବ ॥
ଗୁରୁଙ୍କ ଶିଷ୍ୟ ଅବିଶ୍ୱାସ । ପିତା ପୁତ୍ରକୁ ଦେବ ବିଷ ॥
ଭାଇ ଭଉଣୀ ରତିରଙ୍ଗ । ମଦିରା ପାନରେ ତରଙ୍ଗ ॥
କେତେ କହିବା କଳି କଥା । ଶୁଣି ଶୁଣିଲେ ବଡ଼ ବ୍ୟଥା ॥
ରାମଚନ୍ଦ୍ରର ଅଂଶ ଯିବ । ମରହଟ୍ଟାର ରାଜ୍ୟ ହେବ । ୩୦ ।
ମଲ୍ଲିକା ହେବ କିଛି ଦିନ । ବ୍ରାହ୍ମଣ ନେବ ମ୍ଲେଚ୍ଛ ସ୍ଥାନ ॥
ଏ ଅନ୍ତେ ଦ୍ୱିଜ ରାଜା ହେବ । କଳଙ୍କି ତେବେ ପ୍ରକାଶିବ ॥
ବୀରକେଶରୀ ରାଜା ଠାରୁ । କଳଙ୍କି ସଂସାର ବିହରୁ ॥
ଏତେ ଦିନରେ ନାହିଁ ସୁଖ । ଅନ୍ନ ବସ୍ତ୍ରରେ ପ୍ରାଣୀ ଦୁଃଖ ॥
ଅନନ୍ତ ଦାସ ଗୋପ୍ୟ କର । ଏ ଗ୍ରନ୍ଥ ଗୁପତେ ସୁମର । ୩୫ ।
ପ୍ରକାଶେ ପୁତ୍ର ନାଶ ଯିବ । ଦରିଦ୍ର କଷ୍ଟ ବ୍ୟାଧି ହେବ ॥
ଥାନ ଭ୍ରଷ୍ଟ ଯେ ଘର ପୋଡ଼ା । ଗୁପତେ ପଢ଼ି ବଂଶ ବଢ଼ା ॥
ଗୁପତେ ନିତି ପଢ଼ୁଥିବ । ସ୍ୱେଗ ମଣୋଦ୍ଧ କିଛି ଦେବ ॥
ଅଚ୍ୟୁତ ବଚନ ଏ ସାର । ଗୁରୁ ଭଗତି ଗୀତା ଧର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ସନ୍ଥ ଲକ୍ଷଣ
ନାମ କଥନେ ଏକାଦଶ ପଟଳ ॥

## ଦ୍ୱାଦଶ ପଟଳ

ଏ ଭବ ସମୁଦ୍ର ଅଟଇ । ଗୁରୁ ତହିଁକ ନାବ ହୋଇ ॥
ଉତ୍ତମ ଧର୍ମ ନାମ କହି । ଉତ୍ତମ ଜନ୍ମ ଦ୍ୟନ୍ତ ନେଇ ॥
ଏଣୁ ସେ ପ୍ରାଣୀ କୂଳେ ଲଗେ । ନ ପଡ଼େ ଏ ଭବ ତରଙ୍ଗେ ॥
କହ ଶ୍ରୀଗୁରୁ ନସ୍ତାରଣ । ସାଧୁଙ୍କ କେମନ୍ତ ଲକ୍ଷଣ ॥
ଶୁଣ ପବନ ହେତୁକଣ । ସାଧୁ ଲକ୍ଷଣ ତୁମ୍ଭେ ଧର ॥

ସୁମନ ସଙ୍ଗେ ଖେଳାକରେ । ବିଷମ ମନରେ ନ ଧରେ ॥
ସୁଜ୍ଞାନେ ସଦା ହେତୁ ଥାଇ । କୁଜ୍ଞାନେ କେଭେ ନ ଗମଇ ॥
ସର୍ବଦା ସୂକ୍ଷ୍ମ ଅଙ୍ଗିକାରେ । ମଳିନ ଅଙ୍ଗ ସେ ନ ଧରେ ॥
ସୁବୁଦ୍ଧି ଭାବେ ସଦା ଥାଇ । କୁବୁଦ୍ଧି କେଭେ ନ କରଇ ॥
ସତ୍ୟ ବଚନ ପ୍ରତିପାଳେ । ମିଛ ସେ ନ କହଇ ଛାଳେ । ୧୦ ।

ସବୁ କଥାକୁ ସନମତ । ଶମ ଶାନ୍ତିରେ ଧରେ ଚିତ୍ତ ॥
ଭଗବତ ଜ୍ଞାନେ ଧ୍ୟାନ କରେ । ସମାଧି ବସି କୋଧ ଧରେ ॥
ଅଣଅକ୍ଷର ମନ୍ତ୍ର ଧର । ସୂକ୍ଷ୍ମ ରୂପ ଧ୍ୟାନ କର ॥
ସୂକ୍ଷ୍ମ ରୂପ ଯେ ଧରଇ । ସାଧୁ ବୋଲିଣ ତାକୁ କହି ।
ପବନ ସାଧୁ ହେତୁ କର । ପବନ ସଙ୍ଗରେ ବିହର ॥
ସୁମନ ସଙ୍ଗେ ବିହରିବ । ଶ୍ୟାମ ପଞ୍ଚାକ୍ଷର ଜପିବ ।
ସୂକ୍ଷ୍ମ ଅଙ୍ଗ କରିଥିବ । ହରେରାମ ମନ୍ତ୍ର ଜପିବ ॥
ସୁବୁଦ୍ଧି ଚିତ୍ତ କରିଥିବ । ଶୂନ୍ୟ ଭଜନ ମନ୍ତ୍ର ଭାବ ॥
ସତ୍ୟ ବଚନ କହୁଥିବ । ହରେକୃଷ୍ଣ ମନ୍ତ୍ର ଜପିବ ॥
ଶାନ୍ତି ସର୍ବଦା ମନେ ଥିବ । ଯେବା ମିଳିବ ତା ଖାଇବ ।

ସାଧୁ ଲକ୍ଷଣ ତୁମ୍ଭ ତହିଁ । ପୂର୍ବ କଳନେ ଆଶା ନାହିଁ ॥
ଷଡ଼ ଲକ୍ଷଣ ସାଧୁଙ୍କର । ଆତ୍ମା ସାଧନେ ତତପର ॥

କାଷ୍ଟୀଶୁ ନଦୀକୂଳେ ରହ । କଟକ କୂଳେ ରଖ ଦେହ ॥
ତୁମ୍ଭର ବଂଶ ନାହିଁ ଅଂଶ । ତୁମ୍ଭେ ତ ନପୁଂସକ ବଂଶ ॥
ମୃଦଙ୍ଗ କରତାଳ ବହ । ହରିନାମ ଗାଇବ ତହିଁ । ୨୫ ।
ଦୀନ ଅଚ୍ୟୁତ ଗୁରୁ ଗୀତା । ଗୋପାଳେ ପଢ଼ ହେବ ହିତା ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ସାଧୁ ଲକ୍ଷଣ
କଥନେ ନାମ ଦ୍ୱାଦଶ ପଟଳ ॥

---

## ତ୍ରୟୋଦଶ ପଟଳ

କହ ପରମ ଗୁରୁଦେବ । ଶିଷ୍ୟ କେମନ୍ତେ ଉଦ୍ଧରିବ ॥
ନୋହନ୍ତେ ଗୁରୁ ସଂସାରେଣ । ଏ ଜୀବ ଦୋନା ଅକାରଣ ॥
ଅନ୍ଧାର ଘରେ ଯେସନ୍ତ ପ୍ରାଣୀ । ନ ପାରେ ଧନ ମାନ ଅଣି ॥
ଦୀପ ଲଗିଲେ ସବ ପାଇ । ସଂସାରେ ଗୁରୁ ଦୀପ ହୋଇ ॥
ଅନ୍ଧାର ଘରେ ଦୀପ ହୁଅ । ହେତୁ ଦେଇଣ କଲେ ଥୁଅ ॥
ଶୁଣ ହେ ମକୁନ୍ଦ ସୁଜନ । ତୁମ୍ଭେ ତ ଜାତୀଶ୍ୱରେ ଜନ୍ମ ॥
ଜୀବ ନସ୍ତାରେ ଜାତ ହୋଇ । ଗୋପାଳ ଉଦ୍ଧରିବା ପାଇଁ ॥
ଜନମ ହେଲେ ଉତକଳେ । ତାରିବେ ଅମୋକ୍ଷ ଗୋପାଳେ ॥
ତୁମ୍ଭଙ୍କ ଗୃହିଁ ହେବେ ଦାସ । ତୁମ୍ଭର ଯେତେ ଥିବ ଅଂଶ ॥
ସୁଚିତ୍ତେ ସଦା ରହିଥାଇ । କୁତ୍ସିତ କେବେଁ ନ ଧରଇ ॥
ସନ୍ଥତ ସବୁଠାରୁ ହୋଇ । କାହାକୁ ଅସମ୍ମାନ ନୋହେ ॥
ସବଙ୍କ ପ୍ରାୟେ ସବ ଜାଣି । ଦାଅନ୍ତି ଆନ୍ନ ଜଳ ପାଣି ॥
ଉତ୍ତମ ସୁଜ୍ଜନ ଭାଷା । ପ୍ରାଣୀରେ ନ ଧରନ୍ତି ହିଂସା ॥
ବିବେକ ଅଟନ୍ତି ସେ ପୁଣି । ଅବିବେକ ଭାଷା ନ ଭଣି ॥
ଶତ୍ରୁକୁ ମିତ୍ର ପ୍ରାୟେ କରେ । ଦୋଷ ନ ଧରନ୍ତି ମନରେ ॥
ମିତ୍ରଠାବରେ ଅବିଶ୍ୱାସ । କେବେହେଁ ନ ଧରନ୍ତି ଦୋଷ ॥
ଏ ସାତ ଲକ୍ଷଣ ଧର । ମକୁନ୍ଦ ମନେ ହେତୁ କର ॥

ମହାନଦୀର କୂଳେ ଘର । ଢିଗିଲେ ଗ୍ରାମରେ ବହର ॥
ସୁଚତ୍ରେ ସଦା ରହୁଥିବ । ଏକା ଅକ୍ଷରକୁ ଜପିବ ॥
ସନ୍ମତ ସବୁଠାକୁ କରି । ପଞ୍ଚ ଅକ୍ଷର ଜପ କରି । ୨୧ ।

ସବଙ୍କ ଗୁଣ ଧରିଥିବ । ଅଣ ଅକ୍ଷରକୁ ଜପିବ ॥
ତାରକ ମନ୍ତ୍ର ଯେ ଜପିବ । ଉତ୍ତମ ସ୍ଥପା ଯେ ନହିବ ॥
ଗୋପାଲ ମନ୍ତ୍ରକୁ ଭଜିବ । ଶବ୍ଦକୁ ସିଦ୍ଧ କରିଥିବ ॥
ଶବ୍ଦକୁ ସିଦ୍ଧ ପ୍ରାୟେ ମଣି । କାମ ଗାୟତ୍ରୀ ଥିବ ଗୁଣି ॥
ଶୁଣ ହେ ସୁଜନ ମୁକୁନ୍ଦ । ଉଦ୍ଧାର କର ଗୋପବୃନ୍ଦ ॥
ଏ କଳିଯୁଗ ବଡ଼ ମନ୍ଦ । ପ୍ରାଣୀ ମାୟାରେ ପଡ଼ି ଧନ୍ଦ ॥
ମନ୍ତ୍ର ଜପ କରି ନ ପାରି । ନ ପାରେ ଧ୍ୟାନ ଲୟ କରି ॥
ଶ୍ରୀ ଗୁରୁ ସେବ ନ ପାରଇ । ବୈଷ୍ଣବ ସେବ ନ ପୁଛଇ ॥
ଧରି ନ ପାରଇ ଲକ୍ଷଣ । ନ ଦିଏ ଅନ୍ନ ବସ୍ତ୍ର ମାନ ॥
ନପଢ଼େ ବିଦ୍ୟା ଶାସ୍ତ୍ର ପୁଣ । ମାୟାରେ ହୋୟେ ରଣଭଣ ॥

ଦାରା ଆବରି କାମେ ମତ୍ତ । ପୁତ୍ର ଦେଖିଣ ମୋହ ଚିତ୍ତ ॥
ଗରବ ଧନ ପଣ ଦେଖି । ବୃଦ୍ଧ କାଳରେ ନିରମାଖୀ ॥
ସ୍ତିରୀ ବନ୍ଧୁ ପୁତ୍ର ନାତି । ବୃଦ୍ଧ କାଳରେ ନ ସେବନ୍ତି ॥
ତରୁଣେ ଚିର ମଣିଥାଇ । ବୃଦ୍ଧେ ଲୋଡ଼ିଲେ କି ତା ପାଇ ॥
ନିଶିରେ ସୂର୍ଯ୍ୟ କାହିଁ ଦେଖା । ମରଣେ କେ କାହାର ସଖା ॥
ଜନ୍ମ ବେଳରେ ଏକା ଜାଣ । ମରଣ କାଳେ ଏକା ଜାଣ ॥
ଏ ହେତୁ ସୁଜ୍ଞ ଜନ ଜାଣି । ବେଳହୁଁ ଛାଡ଼େ ମୋହ ପୁଣି ॥
ବେଳହୁଁ ହେତୁ ତୁମ୍ଭେ କଲ । ଗୁରୁଙ୍କ ମୁଖେ ପଶୁରିଲ ॥
ଦାରା ଆବୋରି ଥିବ ପୁଣି । ବାଳକ ଖେଳଘର ଜାଣି ॥
ଯେ ଧନ ଗୃହେ ଅରଜିବ । ଗୁରୁ ବୈଷ୍ଣବେ କିଛୁ ଦେବ ॥
ତେବେ ପାଇବ ପଥ ବାଟ । ନିଷ୍ଫଳ ନୋହିବ ଏ ଘଟ ॥
ଖୋଳ କରତାଳ ଚୁଳା ବେଶ । ଭେଖ ବହୁଣ ହୁଅ ଦାସ ॥
ତରାସ ପଙ୍ଖା ବେତ ଶଙ୍ଖ । ସିଙ୍ଗା ବଇଁଶୀ ଯେନ କାଖ ॥

ପଇତା ବ ଘ ନଖ ଗ୍ରନ୍ଥି । ଭେଖ ବନ୍ଧୁଣ ଭିକ୍ଷା ଲୋଡ଼ି ॥
ଉଦର ପୋଷି ଦିନ ନିଅ । ଦୀନ ଅଚ୍ୟୁତ ଗୁଣ ଗାଅ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ସୁଜନ
ଲକ୍ଷଣକଥନେ ନାମ ତ୍ରୟୋଦଶ ପଟଳ ॥



## ଚତୁର୍ଦ୍ଦଶ ପଟଳ

ଶ୍ରୀଗୁରୁ ପରମ ହେ ଗୁରୁ । ହେତୁ କହିଲେ ଶିଷ୍ୟ ତରୁ ॥
ଶୁଣ ହେ ରାହାସର ଦାସ । ପଗୃଶ ପାର ବଡ଼ ରସ ॥
ଶୋରତା ବକତା ପଗୃରେ । ଉନ୍ନ ମିଳିଲେ ରସ ପୂରେ ॥
ରାହାସ ଦାସ ପଗୃଣିଲେ । କର୍ଣ୍ଣ ଦାସ ଯେ ସାତ ହେଲେ ।
ବକତା ଅଚ୍ୟୁତ ମୁଁ କହି । ଚବଣ ଶୁଣ ଗୋପ ଭାଇ । ୫ ।
ଆବର ଷୋଳସହ ଅଂଶ । ତୁମ୍ଭେ ତ ବଶେ ଶିଷ୍ୟ ଦାସ ॥
କେତେକ କହିବା ବିସ୍ତାର । ଲେଖି କେ ପାରେ ସଂଖ୍ୟା କର ॥
ରାହାସ ଦାସ ଷଡ଼ସହ । କର୍ଣ୍ଣ ଦାସରେ ଛଡ଼ ଶସ ॥
ସହସ୍ର ବ୍ରତ ଅଚ୍ୟୁତର । ଷୋଳ ସହସ ଏ କୁମର ॥
ଅମ୍ଭର ଗଣ ଏ ଅଟନ୍ତି । ଯୁଗକୁ ଯୁଗ ସଙ୍ଗେ ଥାନ୍ତି । ୧୦ ।
ଅନନ୍ତ ସତ୍ୟ ତ୍ରେତୟାରେ । ଦ୍ୱାପର କଳି ଏ ଯୁଗରେ ॥
କଳିରେ ନନ୍ଦଆରେ ଜାତ । ଉତ୍କଳେ ଲେମ୍ବାଳ ଥଲେ ତ ॥
ପୁଣ କଲଙ୍କିରେ ବେହାର । ଅର୍ଦ୍ଧ ଛଳା ଯେ କଟକର ॥
ଲୀଳା ବଡ଼ୋ ରାଜପଣେ । କଲଙ୍କି ଅଭୟ ଚରଣେ ॥
ଷୋଳସହସ ପାପେ ଯିବ । ଛଡ଼ ଅବଶ୍ୟେ ଭୁଟିବ । ୧୫ ।
ଅକର୍ମେ ଉନ୍ନ ସସ ଯିବ । ସାତରୁ ବେନ ଯେ ଦୁଷିବ ॥
ଆବର ଗୁପତେ ଭୁଟିବ । କଲଙ୍କି ବେହାର ହୋଇବ ॥
ସ୍ତ୍ରୀଲକ୍ଷ ଷେଗ ହୋଇବ । ଗ୍ରୁଣ ଯେ ଲକ୍ଷ ଅଶ୍ୱ ହେବ ।

ସତ୍ୟ କଳ ବୋଲଣ ନାମ । ମିଛ କଳର ନାହିଁ ନାମ ॥
ଶୁଣ ହେ ହନୁଥାନ ମଥୁରା । ହେତୁ କଣଣ ଥିବ ଧରା । ୨୦ ।

ଶୁଣ ହେ ଆନନ୍ଦ ଗୋବନ୍ଦ । ଦାସ ଲକ୍ଷଣ ହୃଦେ ବନ୍ଦ ॥
ଦୁଃଖକୁ ଶୋଚନା ନ ଥାଇ । କର୍ମ ଆଦରି ଦୁଃଖ ସହ ॥
ସୁଖ ପାଇଲେ ଭୋଳ ନୋହେ । ହେତୁ କଣଣ ଦନ ନଏ ॥
ମନରେ ଭେଦ ନ ପଶଇ । ମନ୍ଦ ଠାବରେ ନ ବସଇ ॥
ବାଦ ନ ଧରଇ ପ୍ରାଣୀରେ । ସୁଚଭେ କହଇ ମଧୁରେ । ୨୫ ।

ଦେହକୁ କେଲଶ ହୋଇଲେ । କଷଣ ମାନ ଯଦ ପଡ଼େ ॥
ଦୁର୍ଲ୍ଲଭ ସୁଲଭ ଯେ ସମ । ଆନନ୍ଦେ ବହରେ ଉତ୍ତମ ॥
ଦୁଃଖ ସୁଖ ଦ୍ୱନ୍ଦ୍ୱବାଦରେ । ଦୁଲଭ ସୁଲଭ ଶୁଚରେ ॥
ବାହ୍ୟ କଷଣ ଶରୀର । ଆଠ ଲକ୍ଷଣ ଦାସଙ୍କର ॥
ଦାସ ଲକ୍ଷଣ ହେ ଆନନ୍ଦ । ଗୋବନ୍ଦ ହୃଦମଧ୍ୟେ ବନ୍ଦ ॥ ୩୦ ।

ପୀତାମ୍ବର ପୁରରେ ବାସ । ଆନନ୍ଦ ହୋଇବ ହରଷ ॥
ବୃଦ୍ଧ ଗଙ୍ଗା ନଦୀର ତଳ । ଖଦର ଗୁପତ ସେ ସ୍ଥଳ ॥
ଗୋବନ୍ଦ ସମ୍ଭୁଗ୍ରାମେ ରହ । ଧାନୁଆ ନଦୀ ନୀର ବହ ॥
ଶ୍ରୀ ନୀଳକନ୍ଦରଙ୍କ ଆଠ । ନାମ ଅଟଇ ଦେଶ କୋଠ ॥
ସେ ଦେଶେ ତୁମ୍ଭର ବହାର । ହେ ଗୋପ କୁଳକୁ ଉଦ୍ଧାର ॥
ତୁମ୍ଭଙ୍କୁ ଗ୍ଭହିଁ ସେ ଗୋପାଳ । ଶିଖିବେ ଖୋଲ କରତାଳ ॥
ଆନନ୍ଦ ଗୋବନ୍ଦ ହେ ଦାସ । ଅଚ୍ୟୁତ କଥା ମନେ ଘୋଷ ॥

ଇତି ଶ୍ରୀଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ଦାସ ଲକ୍ଷଣ
ବର୍ଣ୍ଣନେ ଯୁଗକ୍ଷସ୍ତ ବଚ୍ଚିରଣେ ନାମ
ଚତୁର୍ଦ୍ଦଶ ପଟଳ ॥

—※—

# ପଞ୍ଚଦଶ ପଟଳ

ଶ୍ରୀଗୁରୁ ଅଜ୍ଞା ହେଉ ଅମ୍ଭ । ଗୁଚିଲେ ହେବ ମନ ଦମ୍ଭ ॥
ବୈଷ୍ଣବ ଲକ୍ଷଣ କହ । ଶୁଣି ଗୁଚିବ ମନ ମୋହ ॥
ବସ୍ତ୍ର ସୁଦାମ ବେନି ଶୁଣ । ବୈଷ୍ଣବ ନବ ଯେ ଲକ୍ଷଣ ॥
ବଇର ଭାବ ଜନେ ନୋହେ । ମିତ୍ର ପରାୟେ ଭାଷା କହେ ॥
ବିତର୍କ ଭାବରେ ଖେଳଇ । ତର୍କ କାହାକୁ ନ କହଇ ॥ ୫ ॥
ବିଦ୍ୟା ଗୁଣରେ ସୁପଣ୍ଡିତ । ମୂର୍ଖଙ୍କ ପ୍ରାୟେ ମଉନ ତ ॥
ମନ୍ତ୍ର ଭଜନ ନିରନ୍ତର । ହରିନାମକୁ କରେ ସାର ॥
ଚୌରାଶି ମନ୍ତ୍ର ଯୋଗେ ମନେ । ଜାଳନ୍ଧ୍ର ଯନ୍ତ୍ରର ସାଧନେ ॥
ପ୍ରଣବ ବିଧି ସେ ଜାଣନ୍ତି । ଓଁକାରେ ସର୍ବ ମନ୍ତ୍ର ପାନ୍ତି ॥
ପ୍ରାଣୀରେ ପୀରତି କରନ୍ତି । ଅପ୍ରୀତି ଜନରେ ନୋହନ୍ତି ॥
ପ୍ରକୃତି ବସ ସେ ନ ଜାଣେ । ପ୍ରସିଦ୍ଧ କଥାମାନ ଶୁଣେ ॥
ପ୍ରାଣ ପୁରୁଷକୁ ଧ୍ୟାନରେ । ବିହରେ ପରମ ସଙ୍ଗରେ ॥
ଏ ନବ ଲକ୍ଷଣ ଧରେ । ବୈଷ୍ଣବ ସଂସାରେ ବିହରେ ॥
ବସ୍ତ୍ର ସୁଦାମ ତୁମ୍ଭେ ଦୁଇ । ବୈଷ୍ଣବ ଭାବ ତୁମ୍ଭେ ବନ୍ଧୁ ॥
ବତିଶକ୍ଷର ଷୋଳ ନାମ । ହରେ ରାମ ଯେ କୃଷ୍ଣ ଶ୍ୟାମ । ୧୫ ।
ହ୍ରୀରଉଁ ଶୀରଉଁ କ୍ଲୀଲଉଁ । ଦାମ ସୁମର ମନେ ରଖୁ ॥
ଓଁକାର ଆଦି ନବ ବୀଜ । ଏ ନବ ବୀଜ ତୁମ୍ଭେ ଭୁଞ୍ଜ ॥
ପୀତାମ୍ବର ପୁରରେ ଦେହ । ସେଠାରେ ରହି ଦିନ ନିଅ ॥
ନୀଳଗିରି ଶଙ୍ଖ ଗ୍ରାହାଙ୍କେ । ସେ ସ୍ଥାନେ ବସ୍ତ୍ର ଖେଳରଙ୍ଗେ ॥
ଭାର୍ଗବୀ ନଦୀକୂଳେ ବାସ । ଦୀନ ଅଚ୍ୟୁତ କଥା ଘୋଷ ॥

ଇତି ଶ୍ରୀଗୁରୁଭକ୍ତି ଗୀତା ଚୂଡ଼ାମଣି ଗ୍ରନ୍ଥେ ବୈଷ୍ଣବ
ଲକ୍ଷଣ କଥନେ ନାମ ପଞ୍ଚଦଶ ପଟଳ ॥

—:୦:—

° ୧—ହ୍ରୀଁ ଶ୍ରୀଁ କ୍ଲୀଁ ॥ ( ଖ, ଗ )

## ଷୋଡ଼ଶ ପଟଳ

ଆଜ୍ଞା ପରମ ଗୁରୁ ହେବ । ଏ ଜୀବ ତେବେ ନିସ୍ତରିବ ॥
ବୈରାଗ୍ୟ ଲକ୍ଷଣ ବହୁଣ । ପ୍ରାଣୀ ସଂସାରେ ଖେଳେ ପୁଣ ॥
ଶୁଣ ହେ ଉକ୍ତଆନ ମଥୁରି । ବୈରାଗ୍ୟ ହେତୁ ତୁମ୍ଭେ ଧରି ॥
ଶୁଣ କହିବା ଲଇକ୍ଷଣ । ଶରଧା ଚିତ୍ତେ ମନେ ଘେନ ॥
ମଙ୍ଗଳ ଭୁବନ କରନ୍ତି । ନିର୍ଦ୍ଵନ୍ଦୀ ହୋଇ ବସିଥାନ୍ତି ॥
ପରହୁତରେ ଗ୍ରାମ ବାସ । ଦିଅନ୍ତି ଅନ୍ନଜଳ ଗ୍ରାସ ॥
ପରଦାରାକୁ ଚହି ନାହିଁ । ଡୋର କୌପୁନୀ ମାତ୍ର ରହି ॥
ପର ଧନରେ ନାହିଁ ଚିତ୍ତ । ଯେ ମିଳେ ଭୁଞ୍ଜଇ ତୁରିତ ॥
ପରମେଶ୍ଵର ଚିନ୍ତା କରି । ରହନ୍ତି ପୁଣ୍ୟ ଥାନ ଧରି ॥
ମନ୍ତ୍ରକୁ ଭଜନ କରନ୍ତି । ନିଶ୍ଚିନ୍ତ ସ୍ଥାନେ ବସିଥାନ୍ତି । ୧୦ ।
ଯନ୍ତ୍ରକୁ ତନ୍ତ୍ରରେ ଭେଦଣ । ସାଧନା କରୁଥାନ୍ତି ପୁଣ ॥
ପ୍ରଣବ ଗୁରୁ ଦଣ୍ଡବତ । ତ୍ରିସନ୍ଧ୍ୟା କରୁଥାନ୍ତି ସେ ତ ॥
ନିର୍ବେଦ ଚିତ୍ତେ ବନ୍ଧୁ ତୋଷ । ମୋହକୁ ନ କରେ ମୁହାସ ॥
ମୋହନୀ ମାୟାରେ ନ ପଡ଼ି । କୌପୁନ କଟି ଥାନ୍ତି ଭିଡ଼ି ॥
ବୈରାଗ୍ୟ ଏ ଦଶ ଲକ୍ଷଣ । ଆନନ୍ଦ ମଥୁରି ହେ ଶୁଣ ॥
ଶ୍ରୀନୀଳକନ୍ଦର ପୂର୍ବରେ । ବାଙ୍କି ଯେ ମୁହାଣ ସେଠାରେ ॥
ସେଠାରେ ମଠ କରି ରହ । ତୁମ୍ଭର ଗ୍ରୁଢ଼ିବ ଯେ ଦେହ ॥
ଅବଶ୍ୟ ବେନ ଗୋଟିକର । ଭୁଞ୍ଜି ନିର୍ମାଲ୍ୟ ଦିନ ହର ॥
ତୁଳସୀ ଧଣ୍ଡା ଜଗନ୍ନାଥ । ଗୁହ୍ଣିଣ ଥିବ ତୁମ୍ଭ ହସ୍ତ ॥
ଖୋଳ ହତ୍ତାନ ବଜାଇବ । ମଥୁରି କର୍ତ୍ତାଳ ଧରିବ । ୨୦ ।
ଶ୍ରୀଜଗନ୍ନାଥ ଗୁଣମାନ । କରିବ ନାମ କୀରତନ ॥
ଅଚ୍ୟୁତ ମଠ ଭଣାଇବ । ତୁମ୍ଭର କଥା ରହିଥିବ ॥
ଗୋପାଳ କୁଳ ବାଧଗାଈ । ସୁନ୍ଦର ପଳ ତହିଁ ବନ୍ଧି ॥

ବାଧ କଉଡ଼ି ଯେତେ ହେବ । ସେ ମଠେ ନେଇ ବନୋଇବ ॥
ଶରଧା ଶବେ ଯେବା ଦେବ । ଅବଢ଼ା ମାନ ଖଞ୍ଜୁଥିବ ॥
ଗୋପାଲ ପୋସ୍ୟେ ଯେତେ ଥିବେ । ସେଠାରେ ତୁମ୍ଭଙ୍କୁ ସେବିବେ ॥
ଗୋପାଲ କୁଳେ ଜନ୍ମେ ବୀଜ । ତୁମ୍ଭଙ୍କୁ ସେ କରିବ ପୂଜ୍ୟ ॥
ତୁମ୍ଭ ସମାଧି ଦରଶନ । ଦର୍ଶନେ ଲଭି ତୀର୍ଥ ପୁଣ୍ୟ ॥
ତୁମ୍ଭ ସମାଧି ନ ପୂଜିବ । କ୍ଷେତ୍ରରେ ଫଳ କି ପାଇବ ॥
ଜ୍ୟୋତିବ୍ରନନ୍ଦ ଲୟେ କରି । ଶ୍ରୀ ଜଗନ୍ନାଙ୍କୁ ସୁମରି ॥
ଅଣଅକ୍ଷର ଏକାକ୍ଷର । ତାରକ ଲୟ ଠାବକର ॥
ସାମ ପଞ୍ଚାକ୍ଷର ଯେ ପୁଣ । ହରେ ରାମ ଯେ ବତିଶେଣ ॥
ହରିଦି ରାମାଦି କୃଷ୍ଣାଦି । ଓଁକାର ରାମ ଗୃଶ ଭେଦି ॥
ଶୂନ୍ୟ ଭଜନ ମନ୍ତ୍ର ଧର । ଏ ଦଶ ମନ୍ତ୍ରକୁ ସୁମର ॥
ଦଶ ଲକ୍ଷଣ ଦେହେ ବନ୍ଧୁ । ନୀଳ ଗିରିରେ ରହି ଯାଇଁ ॥
ଯେତେ ଦିନରେ ଜଗନ୍ନାଥ । ନୀଳାଚଳରେ ଥିବେ ସେତ ॥
ତୁମ୍ଭର ଥାନ ଥିବ ରହି । କୀର୍ତ୍ତି ରହିଣ ଥିବ ମହୀ ॥
ତୁମ୍ଭ ବାଜେଣା ଯେ ଗାୟନ । ଶୁଣି ସନ୍ତୋଷ ନୃପ ଜାଣ ॥
ପଟମୀ କୃଷ୍ଣାଞ୍ଚଲ ଶାଢ଼ୀ । ଅବଶ୍ୟ ରାଜା ଦେବ ଲୋଡ଼ି ॥
ପ୍ରସିଦ୍ଧ ପଣେ ବସିଥିବ । ଦେଉଳ ଦୁଆରେ ଗାଇବ । ୪୨ ।
ପ୍ରତାପ ରାଜ ବଇଷ୍ଣବ । ପ୍ରଚ୍ଛନ୍ନ କରି ଠାବ ଦେବ ॥
ଶ୍ରୀ ଜଗନ୍ନାଥ କିଛୁଦିନ । ଲୀଳା କରିବେ ସେହି ସ୍ଥାନ ॥
ଦେଉଳକୁ ଉଭେଇଣ ଯିବେ । ପୁଣ କଳକି ରୂପ ହେବେ ॥
ଦାରୁ ପାଷାଣ ରୂପମାନ । ସମସ୍ତେ ହୋଇବେ ଗୋପନ ।
କଳଙ୍କି ରୂପ ଦରଶନ । କରିବେ ଆତ୍ମା ଜ୍ୟୋତି ଧ୍ୟାନ ॥
ତୁମ୍ଭେ ସେ ସଙ୍ଗେ ବିହରିବ । ନବୀନ ଜନମ ପାଇବ ॥
ସେକାଳେ ହେବ ବଡ଼ ଦୁଃଖ । ପ୍ରାଣୀଙ୍କ ନାହିଁ କିଛି ସୁଖ ॥
ସତ୍ୟଯୁଗରେ ପରଜାଏ । କଳଙ୍କି କରେ ପ୍ରଶଂସାଏ ॥
କଳିରେ ମ୍ଳେଚ୍ଛ ଯାର । ବତିଶ ସପ କ୍ଷୟକର ॥
ଏହି ଯେ ବତିଶ ସପେଣ । ଏ ଜନ୍ମେ ସୁଖ ନାହିଁ ପୁଣ ॥

ଅନ୍ନ କଷ୍ଟ ଯେ ବସ୍ତ୍ର କଷ୍ଟ । ରାଜ୍ୟ କଷ୍ଟହିଁ ପୁତ୍ର କଷ୍ଟ ॥
ଚଳନ୍ତା କଷ୍ଟ ଯେ କଥା କଷ୍ଟ । ଏ କଷ୍ଟେ ପ୍ରାଣୀ ନଷ୍ଟ ଭ୍ରଷ୍ଟ ॥
ପିତା ତେଜିଲ ପୁତ୍ର କଷ୍ଟେ । ପିତା ବିମୁଖ ଗୃହ ଭ୍ରଷ୍ଟେ ॥
ଏ କଷ୍ଟେ ପ୍ରାଣୀଙ୍କ ଆରତ । ଅଚ୍ୟୁତ ନହଇ ଆଗତ ॥

ଇତି ଶ୍ରୀ ଗୁରୁଭକ୍ତିଗୀତା ତୃତୀୟଖଣ୍ଡେ ବୈଷ୍ଣବ ଲକ୍ଷଣ
କଥନେ ନାମ ଷୋଡ଼ଶ ପଟଳ ॥

———

## ସପ୍ତଦଶ ପଟଳ

ସୁମତି ତୁମ୍ଭ ଗୁଣମାନ । ଅମ୍ଭେ ହରୁଣଅଛୁ ଦନ ॥
ମହନ୍ତ ଲଇକ୍ଷଣ ଯେତେ । ଅଜ୍ଞା ଯେ ହୋଇବ ସୁଚତେ ॥
ଶୁଣ ରହିଦାସ ଦାସମାନେ । ହେତୁ କରିଣ ରଖ ମନେ ॥
ଆତ୍ମାର ସଙ୍ଗେ ଖେଳୁଥାନ୍ତି । ମନକୁ ନିଷ୍ଠଲେ ରଖନ୍ତି ।
ପର ଅପର ତାଙ୍କ ନାହିଁ । ସଙ୍ଗତେ ସର୍ବ ଲୋକ ରହି ॥
ପଦ୍ମପତର ପାଣି ମତ । ମିଶି ନ ମିଶି ରହେ ଚିତ୍ତ ॥
ସ୍ୱଧର୍ମ ସ୍ୱକର୍ମ କରନ୍ତି । ସୁଶୀଳ ଶୁଦ୍ଧ ତାଙ୍କ ମତି ॥
ଆନନ୍ଦ ସର୍ବଦା ଚିତ୍ତରେ । ଅନ୍ନ ବସନ ଦାନ କରେ ॥
ଜୀବରେ ଦୁଃଖ ନ ଦିଅନ୍ତି । ଦୁଃଖୀ ଦରିଦ୍ରଙ୍କୁ ପୋଷନ୍ତି ॥
ମରନ୍ତି ଏହି ପାଞ୍ଚଜଣ । ରାମ ଭରଥ ଧର୍ମ ପୁଣ । ୧୦ ।
ବିଷ୍ଣୁ ଭକ୍ତ ଯେ ପାଞ୍ଚ କହି । ଦକ୍ଷିଣ ଚନ୍ଦ୍ର ନନ୍ଦ ଦୁଇ ॥
କମାର ରାମ ନିରଞ୍ଜନ । କୁମ୍ଭାର ରାମ ମନେ ଘେନ ॥
ଦ୍ୱିଜ ଶାମ ବଣିକ ହରି । ଏମନ୍ତେ ବାର ନାମ ଧରି ॥
ଏ ବାର ମହନ୍ତ ଲକ୍ଷଣ । ମୁକୁନ୍ଦ ଅନନ୍ତ ଭଜଣ ॥
ଚଉଦ ମହନ୍ତ ହେ ଶୁଣ । ଶିରେ ରଖିବ ସନ୍ଥିଁ ପୁଣ ।
ରାମ ଲେମ୍ବାଳେ ଅଙ୍ଗ ଥୋଇ । ପିତାର ପୁରେ ଭ୍ରୁଥ ରହି ॥

ଧରମୁ ଯାଇଲେ ବାହାର । ସୁନୁପୁରକୁ ବସ୍ତୁ ଧର ॥
ଶରପା ଗ୍ରାମେ ବନ୍ଧ ରହି । ସମାଧି ପଞ୍ଚଜଣ ଦେଇ ॥
ନନ୍ଦ ରହିବ ଯାଇବାର । ଦକ୍ଷିଣ ଷୋଳ କରଣାର ॥
ରାମ ରାମ କୁମାର ଲେହ । ଦାମୋଦର ପଟଣେ ରହ ॥
ଦ୍ୱିଜ ଶ୍ୟାମ ଇଟୁଆ ଗ୍ରାମ । କୁଶମଣ୍ଡଳେ ଗୋପୀ ରାମ ॥
ପଣସ ପୁରେ ନିରଞ୍ଜନ । ରହିବ ଏଥୁ ଯେ ସୁସ୍ଥାନ ॥
ମୁକୁନ୍ଦ ବାଇଖୋଲେ ରହ । ଅନନ୍ତ ବାଲିଷଣ୍ଡ ଥାଅ ॥
ଚୌଦ ମହାନ୍ତ ରହି ପୁଣ । ଉଦ୍ଧାର ଗୋପକୁଳ ଜନ ॥

ରାମଦାସ ମହାନ୍ତ ହେ ଦୁଇ । ମୁକୁନ୍ଦ ଅନନ୍ତ ଦୁଷାଇ ॥
କର୍ଣ୍ଣଦାସ ଯେ ସାତଜଣ । ରାମ ଭରଥ ଦୁଇଜଣ ॥
ଚୌରାଶି ମନ୍ତ୍ର ଘୋଷୁଥିବ । ଚୌରାଶି ଯନ୍ତ୍ରକୁ ପୂଜିବ ॥
ନୀର କ୍ଷୀର ମଧୁର ମତ । ମିଶିଲେ ହୁଅଇ ଯେମନ୍ତ ॥
ମଧୁର ଅମୃତ ଯେ ପୁଣ । ରାମଦାସ କର୍ଣ୍ଣ କ୍ଷୀର ଜାଣ ॥
ଗୋପାଳଗଣ ଯେତେ ଛନ୍ତି । ନୀରର ପ୍ରାପ୍ତେ ସେ ଅଛନ୍ତି ॥
ନୀର ବା ମଧୁରେ ମିଳିବ । ମଧୁରେ ନୀର ଲୁଚିଯିବ ॥
କ୍ଷୀର ଦଧିରେ ନୀର ଦେବା । ନୀରକୁ ବାରି ନ ପାରିବା ॥
କେ ଅବା ରାମଦାସ ଶିଖିବ । କେ ଅବା ବୈରାଗେ ଭ୍ରମିବ ॥
କେ ଅବା ସେବାରେ ଖଟିଣ । ଏମନ୍ତେ ଉଦର ପୋଷଣ ।
ଏଥିକି ଅଂଶରେ ମିଳିବେ । ଅଚ୍ୟୁତଗଣ ବୋଲାଇବେ ॥
ତବଣ ଗୋପାଳ ଯେ ସାର । ମୂଢ଼ ଗୋପାଳ କୁଳ ତାର ॥

ଆପୁ ଗଞ୍ଜା ଯେ ଧୂମମାନ । ବଯର ନ କରି ଆପ୍ୟାନ ॥
ମାଛ ମାଉଁସ ଛଡ଼ାଇବ । ଅଶୁଦ୍ଧ ଦ୍ରବ୍ୟ ନ ଛୁଇଁବ ॥
ଏତେକ ଦ୍ରବ୍ୟ ଯେବେ ଖାଇ । ମଣୋହି ସିଦ୍ଧ ପୂର୍ଣ୍ଣ ନୋହି ॥
ଧୂମରେ ହସ୍ତ ଯେ ଉଚ୍ଛିଷ୍ଟ । ଗଞ୍ଜାରେ ପଦ ହୁଏ ଭ୍ରଷ୍ଟ ॥
ନିଷେଧ ମଦ୍ୟ ଯେ ମାଉଁସ । ମଣୋହିଠାରେ ନାହିଁ ଲେଶ ॥
ମହାପ୍ରସାଦ ମନେ କରି । ଅନ୍ନ ଭୁଞ୍ଜନ୍ତି ସାଧୁ ଧରି ॥

ମହାପ୍ରସାଦ ମଦ୍ୟ ଖାଇ । ଏ କଥା ଉଚିତ ନୁହଇ ॥
କଳି ଭ୍ରଷ୍ଟଙ୍କୁ ନିତ୍ୟାନନ୍ଦ । ସଂସାରେ ରଚିଲେ ସୁସ୍ୱାଦ ॥
ନିର୍ମିଶ ପଥରେ ଯାନ୍ତେ । ସଂସାର ପୋଡ଼ି ସେ ଦଅନ୍ତେ ॥
ସମ୍ପୂର୍ଣ୍ଣ ମନ୍ତ୍ରକୁ ଭଜନ୍ତେ । ଭୂଆ ଗୃହଲ ନୂଆ ଖାନ୍ତେ ॥
କଳିର କାଳ କ ହୁଅନ୍ତା । ସେବାରେ ପ୍ରାଣୀ ନାଶ ଯାନ୍ତା ॥
ଷୋଳକୁ ତିନ ନାମ କଲେ । ହରେ ରାମକୃଷ୍ଣ ବନ୍ଧିଲେ ॥
ମାଛ ମାଉଁସ ଭିଆଇଲେ । ପ୍ରାଣୀଙ୍କ କପଟ ସେ କଲେ ॥
ଏ ଛନ୍ଦେ ତୃଷ୍ଣେ ନ ପଶିବ । ମୁଖେ ଗ୍ରହାସ ଗାଉଥିବ ॥
ନବୀନ ହାଣ୍ଡି ଭିଆଇବ । ନବୀନ ଭୂଆ ଖୁଆଇବ ॥
ସୁଖେ ସଂସାରେ ବିହରିବେ । ମଦ୍ୟ ମାଂଏସକୁ ତେଜିବ ॥
ଅଚ୍ୟୁତ ବଚନକୁ ପାଳି । ବଳେ ଖାଇବେ ଯେବେ ମିଳି ॥
ଗୁଳ୍ମ ବ୍ୟାଧିରେ ମରିବ । ଅଳପ ଦିନେ ନାଶ ଯିବ ॥
ଅଳପ ଆୟୁଷ ତାହାର । ପୁନ୍ଦ୍ର ଜନମ ନାହିଁ ତାର ॥
ବ୍ରଜବାସୀଙ୍କ ଏ ନିଷେଧ । ସଂସାର ଜନେ ନାହିଁ ବାଧ ॥
ବ୍ରଜ ଗୋପାଳ ଏହା ଧର । ଅଚ୍ୟୁତ ଆଜ୍ଞା କର ସାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା କୃତୀୟ ଖଣ୍ଡେ ମହନ୍ତ
ଲକ୍ଷଣ କଥନେ ନାମ ସପ୍ତଦଶ ପଟଳ ॥



# ଅଷ୍ଟାଦଶ ପଟଳ

ଶୁଣ ଶ୍ରୀଗୁରୁ ହେ ପରମ । ଛାଡ଼ ଅନ୍ତର ମନ ଭ୍ରମ ॥
ମହନ୍ତ ଲକ୍ଷଣ କେମନ୍ତ । ତୁମ୍ଭେ କହ ଅହେ ନାଥ ॥
ଦାରୁ ପାଷାଣ ପ୍ରାୟେ ହୋଇ । ସ୍ୱଭାବ ତାଙ୍କର ଅଟଇ ॥
ପ୍ରେମ ଭକତ ଗଦ ଗଦ । ଶୁଣିଲ୍ ସୁଧର୍ମ୍ମ ସୁପ୍ରଦ ॥
ବିବେକ ବିଦ୍ୟା ବୃଦ୍ଧି ମତ । ବସ୍ତୁ ଜନଙ୍କୁ ସେ ରଖନ୍ତି ॥
ସକଳ ଜନେ ଦାନ ଦିଏ । ଉତ୍ତମ ଭୋଜନ ଭୁଞ୍ଜାଏ ॥
ପର ଅପର ଗୃହେ ମାନ୍ୟ । ବ୍ରାହ୍ମଣ ଚଣ୍ଡାଲ ଶୂଦ୍ର ଜନ ॥
କ୍ଷେତ୍ରୀ ବୈଶ୍ୟ ଅଠର ପାଟ । ଛତିଶ କୁଳୀ ଯେତେ ଘଟ ॥
ସମସ୍ତ ଏକ କରି ଥାଇ । ଅଭିନ୍ନ ତାର କାହିଁ ନାହିଁ ॥
କୋଟିଏ ମନୁଷ ବାଛୁଣ । ଉତ୍ତମ ଜନେ ମିଳେ ପୁଣ ॥
ଉତ୍ତମ କୋଟିଏ ବାଛିବା । ଏକଇ ସାଧୁ ଯେ ପାଇବା ॥
ସାଧୁଙ୍କୁ କୋଟିଏ ବାଛୁଣ । ବୈଷ୍ଣବ ମିଳେ ଏକ ଜଣ ॥
ବୈଷ୍ଣବ କୋଟିଏ ବାଛୁଣ । ସନ୍ଥ ମିଳଇ ଏକ ଜଣ ॥
ସନ୍ଥରୁ କୋଟିଏ ବାଛିଲେ । ମହନ୍ତ ମିଳେ ଏକ ଭଲେ ॥
ମହନ୍ତ କୋଟିଏ ବାଛିଲେ । ମହାତ୍ମା ଦରଶନ ଭଲେ ॥
ମହାତ୍ମା ପୁରୁଷ ଯେ ଜନ । ତାଙ୍କର ତ୍ରିଭୁବନେ ଥାନ ॥
ଏକ ଲକ୍ଷଣ କେବା ଧରି । ସେ ସ୍ଥିର ଧାମକୁ ଆବରି ॥
ଜଗନ୍ନାଥ ଯେ କୃଷ୍ଣରାମ । ଭଗବାନ ଯେ ସ୍ଥିର ଧାମ ॥
ଏ ଧାମ ତାଙ୍କର ନିତ୍ୟରେ । ସେବନ୍ତି ରାତ୍ରି ଦିବସରେ ॥
ମହାତ୍ମା ପୁରୁଷ ବୋଲନ୍ତି । କୃଷ୍ଣ ମହାତ୍ମ୍ୟ ଏକ ଚିନ୍ତି ॥
ଦାରୁ ପାଷାଣ ମତ ହୋଇ । ବସିଲ ଠାରୁ ନ ଉଠଇ ॥
ବସିଣ ଦିଏ ଅନ୍ନ ଦାନ । ବସି କରଇ କୃଷ୍ଣ ଧ୍ୟାନ ॥
ମହାତ୍ମା ଲକ୍ଷଣ ଥାଇ । ଗୁରୁ ସେବାରେ ମନ ଦେଇ ॥
ଗୁରୁଙ୍କୁ ନ ଛାଡ଼ଇ କ୍ଷଣେ । ସେବଇ ଗୁରୁଙ୍କ ଚରଣେ ॥
ମହାତ୍ମା ଲକ୍ଷଣ ସାମର । ଶିଖିଲ ଗୁରୁ ଶ୍ରୀପଦ୍ମର ॥

ଉତ୍ଥାନ ଅନନ୍ତ ମୁକୁନ୍ଦ । ସେବିଲ ଗୁରୁ ପାଦ ବନ୍ଦ ॥
ଆବର ନୀଳଗିରି ସେବା । ମହାତ୍ମା ଯେଣେ ତୁମ୍ଭ ସେବା ॥
ଯେ ଜନ ଅନ୍ନ ବସ୍ତ୍ର ଦେଇ । ମହାତ୍ମା ପୁରୁଷଟି ସେହି ॥
ବୃକ୍ଷ ଲଗାଇ ଛାଇ ଦେଇ । ମହାତ୍ମା ପୁରୁଷଟି ସେହି ॥
ମୌଚ୍ଛବ କରି ଅନ୍ନ ଦିଏ । ମହାତ୍ମା ଲକ୍ଷଣ ସେ ହୁଏ ॥
ଜୀବରେ ହିଂସା ଯାର ନାହିଁ । ମହାତ୍ମା ଲକ୍ଷଣ ଅଛଇ ॥
ମିଥ୍ୟା ବଚନ ଯେ ନ କହେ । ମହାତ୍ମା ଲକ୍ଷଣ ତା ଦେହେ ॥
ମୁକୁନ୍ଦ ଅନନ୍ତ ଗୋବିନ୍ଦ । ଉତ୍‌ଥାନ ପବନ ହେ ବନ୍ଦ ॥
ଶୁଣ୍ ହେ ରହ ଯେଣେ ଦେଶେ । ଉତ୍‌ଥାନ ନୀଳଗିରି ବାସେ ॥
ଅନନ୍ତ ମଥୁରା ଦେଶରେ । ସେବା କଲେ ହରଷରେ ॥
ଏଣୁ ମହାତ୍ମା ତୁମ୍ଭେ ଶୋଭ । ଏ ସପ୍ତ ଗୋପର ଦୁର୍ଲ୍ଲଭ ॥
ଦୀନ ଅଚ୍ୟୁତ କହେ ସାର । ତୃତୀୟ ଖଣ୍ଡର ବିସ୍ତର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ମହାତ୍ମା
ଲକ୍ଷଣ କଥନେ ନାମ ଅଷ୍ଟାଦଶ ପଟଳ ।



## ଊନବିଂଶ ପଟଳ

ଶ୍ରୀଗୁରୁ ଦେବ ଉଦ୍ଧାରଣ । ଭବରୁ କର ପରିତ୍ରାଣ ॥
ଭକତି କଲେ ଗତି ହୋଇ । ଭକତି କେତେ ବିଧି ବହି ॥
ଶୁଣ ହେ ଚବିଶ ଗୋପାଳ । କହିବା ବେଗଳ ବେଗଳ ॥
ଭକତି ନବ ପରକାର । ସାଧନ୍ତି ଥୋକେ ଥୋକେ ନର ॥
ଦଉ ଭକତି ବଡ଼ ଗାଢ଼ । ଏକ ଏକ ବା କଲେ ଦୃଢ଼ ॥
ନବଧା ଭକତି ଲକ୍ଷଣ । ଅନନ୍ତ ମୁକୁନ୍ଦ ହେ ଶୁଣ ॥
ରାମ ଭରଥ ବିଷ୍ଣୁ ଦାସ । ଧରମୁ ବନ୍ଧୁ ଶୁଣ ରସ ॥

ଶ୍ରବଣେ ହରି କଥାଶୁଣ । କୀର୍ତ୍ତନ କରନ୍ତୁ ହର୍ଷେଣ ॥
ଏବା ନଶାଏ କୃଷ୍ଣ ଲକ୍ଷ୍ୟେ । ହରି ଗୁଣ ସ୍ମରଣ ଦେହେ ॥
ପାଦ ପଦ୍ମରେ ସେବା କରି । ଅର୍ଚ୍ଚନ ପୁଷ୍ପ ଗନ୍ଧ ଧରି ॥
ସ୍ତୁତି ବନ୍ଦନ ମୁଖେ ନିତି । ଦାସର ପ୍ରାୟେ ହେବ ମତି ॥
ମନରେ ସ୍ମୃଷ୍ଟି ନିରମଳ । ହେତୁ ଧରିବେ ହୃଦସ୍ଥଳ ॥
ସେବା କରିବ ନିତି ଦିନ । ଶ୍ରୀରାଧା କୃଷ୍ଣ ହେବ ମାନ୍ୟ ॥
ଏ ନବ ଭକତି ଲକ୍ଷଣ । ଧରିଲେ ଯେଉଁମାନେ ଶୁଣ ॥
ଶ୍ରବଣ ଭକ୍ତି ପରୀକ୍ଷିତ । ଶ୍ରୀ ଭାଗବତେ ଦେଲେ ଚିତ୍ତ ॥
ଶ୍ରୀ ଭାଗବତ ସାର ପାଇ । କୃଷ୍ଣ ରୂପକୁ ହୃଦେ ଧ୍ୟାଇ ॥
ମରଣ ସଙ୍କଟୁ ତରିଲେ । କୈବଲ୍ୟ ସମାଧି ଲକ୍ଷ୍ୟେ କଲେ ॥
ନାରଦ ବୀଣା ବଜାଇଣ । କୀର୍ତ୍ତନ କଲେ ସେ ହର୍ଷେଣ ॥
କୃଷ୍ଣର ପାଦପଦ୍ମ ସଙ୍ଗ । ନିମନ୍ତି ରହିଲେ ସେ ଅଙ୍ଗ ॥
ଦର୍ଶନ କରି କଂସ ମରେ । କୃଷ୍ଣ ହସ୍ତ ଲାଗିଲା ଶିରେ ।
ଧ୍ରୁବ ସ୍ମରି ଜପ କରି । ଦଶ ଅକ୍ଷର ମନ୍ତ୍ର ଧରି ॥
ସପତ ଋଷି ହେତୁ ଦେଲେ । ସ୍ମରି କୃଷ୍ଣଙ୍କୁ ପାଇଲେ ॥
ଉଦ୍ଧବ ସେବା ବିଧି କରି । ପାଦପଦ୍ମକୁ ଶିରେ ଧରି ।
ତ୍ରିକୂଟେ ପାଦ ଚାହାଁଇଲେ । ସେ ପାଦପଦ୍ମ ଧ୍ୟାନ କଲେ ॥
ରତ୍ନ ପାଦୁକା ଚାହାଁଇଣ । ହୃଦରେ ଦେଖାଇଲେ ପୁଣ ॥
ତ୍ରିଭଙ୍ଗୀ ରୂପକୁ ଦେଖିଣ । ବଦରି-ନାଥକୁ ଗମିଣ ॥
ଅଗ୍ନିର ପ୍ରାୟେ ଯେଉଁ ଜ୍ୟୋତି । ସୂର୍ଯ୍ୟର ପ୍ରାୟେ ଯାର କାନ୍ତି ॥
ସୂର୍ଯ୍ୟରୁ ଜାଣି ଯା କାରଣ । ଏ ରୂପ ପାଇ ତପ ପୁଣ ॥
ଏଣୁ ସେ ପାଦ ସେବା କଲେ । ସେ ପାଦେ ଶରଣ ପଶିଲେ ॥
ଅର୍ଚ୍ଚନ ଭକତି ପୃଥିବୀ । ଏ ପୁଣ ପାଇଲେ ଯେ ସେବି ॥
ଆରାଧି କୃଷ୍ଣକୁ ବନ୍ଦିଲେ । ପାଦପଦ୍ମକୁ ସନ୍ଦରିଲେ ॥
ଶୁକ ଯେ କୃଷ୍ଣ ଗୁଣମାନ । ବନ୍ଦନା କଲେ ସେ ମୁଖେଣ ।
ବନ୍ଦନା କରି ନିରନ୍ତର । ମିଶିଲେ ନିର୍ଗୁଣ ରୂପର ॥

ବ୍ୟାସ ତାହାଙ୍କୁ ଗୋଡ଼ାଇଲେ । ସେ ଅଙ୍ଗେ ପଶି ନ ପାରଲେ ॥
ସେ ଅବ୍ୟକ୍ତରେ ମିଶିଲେ । ପ୍ରାଣୀଙ୍କ ଗୁଣ କହୁଗଲେ ॥
ଅକ୍ରୂର ପାଦେ ସେବା କର । ଗ୍ରୁଡ଼ିଲେ ଧନ ପଣ ଶିଘ୍ର ॥
ଦୁର୍ଯ୍ୟୋଧନର ଅଭିମାନେ । ରହିଲେ ନିଗମ ଯେ ସ୍ଥାନେ ॥
ଧ୍ୟାନେ ରୂପକୁ ଦରଶନ । କୃଷ୍ଣ ଲଭିଲେ ହେତୁ ମନ ॥
ନିର୍ମଳ ମନ ବୁଦ୍ଧି କର । କୃଷ୍ଣର ଅଙ୍ଗ ସଙ୍ଗ କର ॥
ରାତ୍ର ଦିବସ ନ ଜାଣିଲେ । ସଂସାର ଚେଷ୍ଟା ଗ୍ରୁଡ଼ିଲେ ॥
ପୁତ୍ରହିଁ କୃଷ୍ଣକୁ ସେ କଲେ । ଧନହିଁ କୃଷ୍ଣଙ୍କୁ ବୋଇଲେ ॥
ପଣହିଁ କଲେ କୃଷ୍ଣ କଥା । କୁଳ କୁଟୁମ୍ବେ ନାହିଁ ବ୍ୟଥା ॥
ଏମନ୍ତେ ଅଙ୍ଗ ସଙ୍ଗେ ଥିଲେ । ମଥୁରା ଗ୍ରୁଡ଼ି କୃଷ୍ଣ ଗଲେ ॥
ଦ୍ୱାରକାପୁରେ କର ବାସ । ବଢ଼ିଲେ ବହୁତ ଯେ ଅଂଶ ॥
ଏକ ସମୟେ କୁରୁକ୍ଷେତ୍ରେ । ଗୋପ ଦ୍ୱାରକା ମିଳି ପୁତ୍ରେ ॥
ସେଠାରେ ହେତୁ ତାଙ୍କୁ ଦେଲେ । ସୂକ୍ଷ୍ମ ରୂପ ଦେଖାଇଲେ ॥
ସେ ରୂପ ପାଇ ଗୋପୀ ତୋଷ । ଛେଦିଲେ ଭବବନ୍ଧ ପାଶ ॥
ନିର୍ଗୁଣ ରୂପକୁ ଗ୍ରହିଲେ । ସଗୁଣ ରୂପ ପାସୋରିଲେ ॥
ବ୍ରାହ୍ମଣ ସ୍ତ୍ରୀମାନେ ପୁଣ । ଗୋପୀଙ୍କ ସଙ୍ଗେ ସେ ମିଶିଣ ॥
କୃଷ୍ଣର କଥା ଶୁଣି ତୋଷ । ଘୋଷିଲେ ବରଷେ ଯେ ମାସ ॥
ଅନ୍ନ ତାହାଙ୍କୁ ମଗାଇଲେ । ବ୍ରାହ୍ମଣୀମାନେ ଅନ୍ନ ଦେଲେ ॥
ଏକ ବ୍ରାହ୍ମଣୀ ସେ ନଗଲା । ଧ୍ୟାନରେ କୃଷ୍ଣଙ୍କୁ ଦେଖିଲା ॥
ଧ୍ୟାନ ମୂରତି ସେ ଦେଖିଣ । ପଶିଲା ଶ୍ରୀକୃଷ୍ଣ ଅଙ୍ଗେଣ ॥
ଶ୍ୱେତ ରଙ୍ଗ କଳା ଶ୍ୟାମଳ । ନୟନେ ଦେଖି କଲା ଠୂଳ ॥
ଏରୂପ ଦେଖି ପ୍ରାଣ ଦତ୍ତ । ପଶିଲା ଶ୍ରୀକୃଷ୍ଣ ଅଙ୍ଗେ ତ ॥
ମନେ ଶ୍ରବଣ ଗତି ପାଇ । ମନ ଭକତି ଏଣୁ ହୋଇ ॥
ନବ ଭକତି କର୍ମ କର । ଦଶ ଭକ୍ତିରେ ସେ ନିସ୍ତର ॥
ମାତା ଉଦରେ ଯେବେ ଥାଇ । ଶ୍ରବଣେ କି ଶୁଣୁଅଛଇ ॥
ଜଠରେ ଯେବେ ରହିଥିଲା । କୀର୍ତ୍ତନ କାହୁଁ ବା ପାଇଲା ॥

ନୟନ ବୁଜିଥିଲ୍ ପେଟ । ରୂପ ଦେଖିଲ୍ କାହିଁ ସେ ତ ॥
ଗର୍ଭରେ କାହିଁ ସୁମରଣ । ହେରୁ ଯେ ଥିଲୁ କାହିଁ ପୁଣ ॥
ବନ୍ଧନ ନାଡ଼େ ସେହୁ ଥିଲ୍ । ସୁମର କାହୁଁ ତ ଅଇଲ୍ ॥
ପାଦ ସେବାରେ ନାହିଁ ଚିତ୍ତ । ଅମନେ ରହିଥିଲ୍ ସେ ତ ॥
ହସ୍ତେ କି ଅଛ ନା କରିବ । କଷ୍ଟଲେ ବନ୍ଧନେ ସେ ଥିବ ॥
ଗୁଣ ବନ୍ଧନ ଯେଉଁଠାର । ବନ୍ଧନ ସ୍ତୁତ କାହୁଁ ଆର ॥
ଦାସଗଣରେ ପାଦ ଘୋଷି । ସେଠାରେ ହସ୍ତେ ରହେ ଫାଶି ॥
ଅଙ୍ଗ ସୁଷମ ଆର କାହିଁ । ରୁଧିରେ ଜରଜର ଦେହି ॥
ଅମନେ ରହିଥିଲ୍ ଚିତ୍ତ । ମନରେ ନାହିଁ ତାର ଥିତ ॥
ନବ ଭକତ ତାହାଙ୍କର । ମରଣେ ଦଶ ଭକ୍ତି ସାର ॥
ଆଦ୍ୟରେ ଦଶ ଭକ୍ତି ସାର । ପ୍ରାନ୍ତରେ ଦଶ ଭକ୍ତି ଧର ॥
ଷଡ଼ରଙ୍ଗର ପରେ ବାସ । ରହିଛନ୍ତି ପରମ ପୁରୁଷ ॥
ସେ ପୁଣି ସର୍ବଘଟେ ଥାଇ । ତାହାଙ୍କୁ କେହି ନ ଚିହ୍ନଇ ॥
ତାହାଙ୍କୁ ଯେ ଜନ ଚିହ୍ନଇ । ଦଶ ଭକତ ସେହୁ ପାଇ ॥
ସେ ରୂପ ଯେହୁ ଚିହ୍ନେ ନାହିଁ । ଚଉରାଶୀ କାଠିକି କହୁ ॥
ସେ ପଥେ ଯେହୁ ନାହିଁ ପଶ୍ୟ । କି ପ୍ରୟୋଜନ ହୋଇ ଦାସ ॥
କନାଶିଖା ପରିସ୍ତେ ଫୁଲ । ମଣ୍ଡଲ ଅଟଇ ଅମୂଲ୍ୟ ॥
ସେ ମଧ୍ୟେ କ୍ଷୁଦ୍ର ରୂପ ଧରି । ବରଜ ଅଛୁ ସର୍ବ ଶିଖି ॥
ବ୍ରହ୍ମାଣ୍ଡ କୋଟି କୋଟି ସୃଜି । ଯୁଗକୁ ଯୁଗ କେତେ ଭଜି ॥
ଗଗନ ପବନ ଯେ ଜଲ । ପୃଥିବୀ ଅଟେ ପଞ୍ଚ ଠୁଲ ॥
ଏ ପଞ୍ଚ ରୂପ ଭିଆଇଣ । ଜ୍ୟୋତ ରୂପ ଧରି ଆପଣ ॥
ଗଢ଼ି ନ ଭାଙ୍ଗଇଟି ସେହି । ତାହାକୁ କେହି ନ ଚିହ୍ନଇ ॥
ତାହାଙ୍କୁ ଚିହ୍ନେ ଯେଉଁ ଜନ । ଜାଣିବ ସେ ଜନ ସୁପୂର୍ଣ୍ଣ ॥
ତାହାଙ୍କି ଗୁରୁ ଅଙ୍ଗ କହି । ଶିଷ୍ୟ ହୋଇବ ଖୋଜି ତହିଁ ॥
ଏହା ନ ଚିହ୍ନି ଗୁରୁ ହୁଏ । ସେ ଅଙ୍ଗ ମାଟି-ଘଟ ପ୍ରାୟେ ॥
ଅପୋଡ଼ା ମାଟି-ଘଟ ମତ । ନିସ୍ତର ନ ପାରେ ଶିଷ୍ୟ ତ ॥

ତୁମ୍ଭର ପୂର୍ବ ଜନ୍ମ ଫଳ । ସେବିଲ ରାମ ପାଦତଳ ॥
ରାମ ସେବିଲ ମୋ ଚରଣେ । ତୁମ୍ଭେ ଯେ ଲଭିଲ କାରଣେ ॥
ଏ ପଥେ ଦଣ୍ଡେ କ୍ଷଣେ ପୁଣ । ସାଧନ କର ବାଉଜଣ ॥
ଆଉର ବାର ଦାସ ଘୋଷ । ରାଜ ଦିବସ ତହିଁ ରସ ॥
ବେଦର ବାକ୍ୟ ଯେ ପୁରାଣ । ଶ୍ରୀ ଭାଗବତ ଗୀତାରେଣ ॥
ପଢ଼ି ବୁଝିଣ ଯେ ଜାଣିବ ।   ଏ ରୂପ ବିନୁ ନାହିଁ ଠାବ ॥
ମୁକୁନ୍ଦ ଆନନ୍ଦ ଉତ୍‌ଥାନ । ଗୋବିନ୍ଦ ବଜ ହେ ପବନ ॥
ଏହୁ ଜ୍ୟୋତିବ୍ରନନ୍ଦ ମୂଳ । ଅବତାର ରୂପ ଯେ ତାଳ ॥
ଅବତାର ଅଂଶରେ ସେହୁ । ସେ ରୂପ ହୃଦେ ଚିନ୍ତୁଥାଉ ॥
ଖେଳୁଥିବ ଅବତାରେ । ମିଶିବ ନିର୍ଗୁଣ ରୂପରେ ॥
ତେବେ ମରଣୁ ନିସ୍ତରିବେ । ଜନମ ହେତୁ ଯେ ପାଇବ ॥
ଜ୍ୟୋତିକି ଚିହ୍ନି ଯେ ମରଇ । ଜନ୍ମ ମରଣୁଁ ନିସ୍ତରଇ ॥
ପାଣିଲେ ଜ୍ୟୋତି ସୂକ୍ଷ୍ମେ ଧର । ଦୀନ ଅଚ୍ୟୁତ କହେ ସାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ନବଧା ଭକ୍ତି
କଥନେ ନାମ ଊନବିଂଶ ପଟଳ ।

—:o:—

## ବିଂଶ ପଟଳ

ମୁକୁନ୍ଦ ଅନନ୍ତ ଯେ ଦୁଇ । ମନ ସଂଶୟ ଗଲା ନାହିଁ ॥
ରସ ଗୁଣର ରସ କହ । ପରମ ଗୁରୁ ଆଜ୍ଞା ଦିଅ ॥
ଅନନ୍ତ ମୁକୁନ୍ଦ ହେ ଶୁଣ । ଶ୍ରୀକୃଷ୍ଣ ଲୀଳାରସ ଗୁଣ ॥
ଦୁଇ ଯେ ଦଣ୍ଡ ରାଜ ଥାଇ । କୁଞ୍ଜରୁ ବିଜେ ଭାବଗ୍ରାହୀ ॥
ଶୟନ ଦୁଇଦଣ୍ଡ କରେ । ଯଶୋଦା ଉଠାଏ କୃଷ୍ଣରେ ॥
ଗୋଧନ ଦୋହନ ଯେ କର । ବେଳ ଯେ ହେଉଛି ଉଛୁର ॥
ମାତା ବଚନେ କୃଷ୍ଣ ଚଳି । ଗାଈ ଦୁହନ୍ତି ବନମାଳି ॥
ଗାଈ ଦୁହିଁଣ କୃଷ୍ଣ ପୁଣ । କରନ୍ତି ସେ ଦନ୍ତଧାବନ ॥

ସ୍ନାହାନ ସାରି ବେଶ ହୋଇ । ଏମନ୍ତେ ଆଠଦଣ୍ଡ ଯାଇ ॥
ଭୋଜନ ଦୁଇଦଣ୍ଡ କରେ । ଦୁଇଦଣ୍ଡ ସେ ଶୟନରେ ॥
ଦଣ୍ଡ ଚାରି ଯେ ଗୋଷ୍ଠେ ସଜ । ସିକା ବାନ୍ଧୁଙ୍ଗ ଅନ୍ନ ଭୋଗ ॥
ଗାଈ ଚଳନ୍ତି ଚାରି ଦଣ୍ଡେ । ଶିଙ୍ଗା ମୁରଲୀ ବାଇ ତୁଣ୍ଡେ ॥
ଖେଳନ୍ତି ଏକଦଣ୍ଡ ଯାଇ । ଏକଦଣ୍ଡ ସେ ଭାର ଥୋଇ ॥
ବିହାର ଏକଦଣ୍ଡ ବନେ । ଦଣ୍ଡେ ଯେ ଜଳକ୍ରୀଡ଼ା ସ୍ଥାନେ ॥
ଏକଦଣ୍ଡ ଯେ ବସି ହରି । ମଧ୍ୟ ଭୋଜନ ଦଣ୍ଡେ କରି ।
ସୂର୍ଯ୍ୟ ପୂଜାରେ ଦଣ୍ଡେ ଯାଏ । ଏମନ୍ତେ ରାଜନୀତି ହୁଏ ॥
ଗୋଧନ ଘେନି ଆସିବାରେ । ଚାରି ଦଣ୍ଡ ଯାଇ ପଥରେ ॥
ଏମନ୍ତେ ସନ୍ଧ୍ୟା ପରବେଶ । ମିଳନ୍ତି ମାତା ପିତା ପାଶ ॥
ସ୍ନାନ ଭୋଜନ କରି ସାରି । ଗାଈମାନ ଦୋହନ କରି ॥
ଛ ଦଣ୍ଡ ରାତ୍ର ଭୋଗ ହୋଇ । ସଭା କରନ୍ତି ଗୋପଗୋଈ ॥
କପଟ ନିଦ୍ରା ଦଣ୍ଡ ଚାରି । କୁଞ୍ଜ-କୁଟୀକୁ ବିଜେ କରି ॥
ଶୟନ ଦୁଇଦଣ୍ଡ ତହିଁ । ବେଶରେ ଚାରିଦଣ୍ଡ ଯାଇ ॥
ଏମନ୍ତେ ଗୃହେ ପରବେଶ । ଶ୍ରୀକୃଷ୍ଣଲୀଳା ଗୁଣ ରସ ॥
ମାନସେ ଏ ରସ ଘୋଷିବ । ଏ ରସମାନ ଘୋଷୁଥିବ ॥
ଗୋପାଳ ମନ୍ତ୍ରକୁ ପଢ଼ିବ । ସମୟ ଜାଣି ଭୋଗ ଦେବ ॥
କୃଷ୍ଣମନ୍ତ୍ରକୁ ଜପ କର । ଏ ରସେ କଳି ପାପ ହର ॥
ରାହାସଲୀଳା ସୁମରଣ । ଶ୍ରୀକୃଷ୍ଣ ମନ୍ତ୍ରକୁ ଜପିଣ ॥
ଗୋଲୋକ ପାଇବ ମରଣେ । ଶୁଣ ଯେ ଥିବ ରାଜ ଦନେ ॥
ଏ କଳିକାଳ ବଡ଼ ମନ୍ଦ । କୁଟୁମ୍ବ ପୋଷିବାର ଧନ୍ଦ ॥
ଗୁରୁଙ୍କ ପଚାରି ଯେ ବୁଝେ । କୁଟୁମ୍ବ ପାଇଁ ଦୁଃଖେ ଯୁଝେ ।
ତୁମ୍ଭେ ଗୁରୁଙ୍କୁ ପଚାରିଲ । ଏଣୁ ଯେ ସୁପଥ ପାଇଲ ॥
କୁପଥ କୁଟୁମ୍ବେ ମୁହାଁସ । ଦୀନ ଅଚ୍ୟୁତ କହେ ରସ ।

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ରସଗୁଣକଥନେ ଶ୍ରୀକୃଷ୍ଣ
ଗୋପଲୀଳା ବିହାରଚରିତେ ନାମ ବିଂଶ ପଟଳ ।

# ଏକବିଂଶ ପଟଳ

ଅନନ୍ତ ମୁକୁନ୍ଦ ଗୋବିନ୍ଦ । ଉତ୍ଥାନ ପବନ ଆନନ୍ଦ ॥
ସ୍ତୁତି ଆମ୍ଭର ଘେନ ମନେ । କରୁଣା କର ଅବଧାନେ ॥
ଠାକୁରାଣୀର ନିତ୍ୟ ରସ । ଗୁଣିବ ତାଙ୍କ ଗୁଣଯଶ ॥
ଠାକୁରାଣୀ ଉଠି ପ୍ରାତଃରେ । ଦନ୍ତଧାବନ ବିଧି ସରେ ॥
ଏମନ୍ତେ ଏକ ଦଣ୍ଡ ଯାଏ । ବେଶଭୂଷଣ ରାଧା ହୁଏ ॥
ବେଶରେ ଏକ ଦଣ୍ଡ ଯାଏ । ନନ୍ଦ ମନ୍ଦରେ ରାଧା ଥାଏ ॥
ନନ୍ଦର ଘରେ ରନ୍ଧନରେ । ପାଞ୍ଚ ଯେ ଦଣ୍ଡ ତହିଁ ପୂରେ ॥
କୃଷ୍ଣ ଭୋଜନ ଏକ ଦଣ୍ଡ । ଆଠ ଦଣ୍ଡ ଯେ ଲୀଳାଖଣ୍ଡ ॥
ରାଧା ଭୋଜନ ଦଣ୍ଡେ କରେ । ଗୋଷ୍ଠ ବିହାର କୃଷ୍ଣ ଧୀରେ ॥
ରାଧିକା ଦଣ୍ଡେ ଦେଖେ ରହି । ଦଶ ଦଣ୍ଡରେ ଗୃହେ ଯାଇ ॥
ଏଗାର ଦଣ୍ଡେ ସୂର୍ଯ୍ୟ ପୂଜା । ତିନିଦଣ୍ଡ ଯେ ପଥ ଶଯ୍ୟା ॥
ଦୁଇଦଣ୍ଡ ଯେ ଫୁଲ ତୋଳି । ସୂର୍ଯ୍ୟ ପୂଜନ୍ତି ଗୋପୀ ମିଳି ॥
ଜଳକ୍ରୀଡ଼ା ପଶା ଖେଳରେ । ଛ ଦଣ୍ଡ ଗଲା ଏ ଲୀଳାରେ ॥
ସୂର୍ଯ୍ୟକୁଣ୍ଡେ ଗମନ କରି । ଦି'ଦଣ୍ଡ ପଥରେ ବିହରି ॥
ଦଣ୍ଡେକ ସୂର୍ଯ୍ୟ ପୂଜା କରେ । ସୂର୍ଯ୍ୟ ପ୍ରସାଦ ଦଣ୍ଡେ ହରେ ॥
ଦି'ଦଣ୍ଡେ ଗୃହେ ପରବେଶ । ରାଧା ଠାକୁରାଣୀଙ୍କ ରସ ॥
ଦିବସେ ଏହିମତ ରସ । ଜଗତଜନ ମନେ ତୋଷ ॥
ସନ୍ଧ୍ୟା ଉପରୁ ଦଣ୍ଡକରେ । ଶୟନ ରାଧାର ମନ୍ଦରେ ॥
ନିଶି ରନ୍ଧନ ଦଣ୍ଡ ଚାରି । ଭୋଜନ ଏକଦଣ୍ଡ କରି ॥
ତିନିଦଣ୍ଡ ଶୟନ ପୁଣ । ଦି'ଦଣ୍ଡ ଅଭିସାର ଜାଣ । ୨୦ ।
ଦଣ୍ଡେକ ପୁଷ୍ପ ଗୁଚ୍ଛ କରି । କୃଷ୍ଣ ପୂଜାର ବିଧି ସାରି ॥
ଚାରିଦଣ୍ଡ ଯେ ନୃତ୍ୟ ଗୀତ । କୁଞ୍ଜରେ ଖେଳି ଦଣ୍ଡ ସାତ ॥
ଭୋଜନ ଦଣ୍ଡେ କୃଷ୍ଣ କରେ । ତାମ୍ବୁଲ ଭୁଞ୍ଜନ୍ତି ମୁଖରେ ॥
ଚାରିଦଣ୍ଡ ଯେ ରତି-ପ୍ରୀତି । ଦି'ଦଣ୍ଡେ ଶୟନ ଶ୍ରୀପତି ॥

କୁଞ୍ଜୁ ଆସନ୍ତେ ଦଣ୍ଡ ଦୁଇ । ଦୁ'ଦଣ୍ଡ ଘୋର ନିଦ୍ରା ହୋଇ ॥
ଏମନ୍ତେ ନିଶି ଲୀଳା ରସ । ରସିକ ରାଧା ଗୁଣ ଘୋଷ ॥
ରସଗୁଣର ରସ ଏହୁ । ଠିକେ କହିଲ ରସ ଦୁଇ ॥
ଏଥି ବଦ୍ଧୁତ ରସ ଅଛୁ । ଯେ ଅବା ପାରେ ରସ ପୁଛି ॥
ଏ ତ ସଗୁଣ ଭକ୍ତ ରସ । ସଗୁଣ ନିର୍ଗୁଣ ଦୁ'ରସ ॥
କୃଷ୍ଣ ଭଣ୍ଡାରେ ଦୁଇ ରସ । ଘୋଷନ୍ତି ସାଧୁ ସନ୍ଥ ଦାସ । ୩୦ ।
ନିର୍ଗୁଣ ଏକ ଏକ ଘୋଷେ । ସଗୁଣେ ସର୍ବଜନ ପଶେ ॥
ସଗୁଣ ନିର୍ଗୁଣ ସାଧିବ । ତେବେ ମନୁ ସଂଶୟ ଯିବ ॥
ବେନି ଚକ୍ଷୁ ଥିଲେ ଯେମନ୍ତ । ନିର୍ଗୁଣ ସଗୁଣ ଦୁ'ମତ ॥
ଗୁଣ ଗୋଟିଏ ଶିଖିଥାଇ । ଏକା ଆଖି ଯେ ତାକୁ କହି ॥
ରାଧା ଭଜନ୍ତ ହେ ମୁକୁନ୍ଦ । ଅନନ୍ତ ଦୁଇ ଭକ୍ତ ବନ୍ଦ ॥
ରାଧା ମନ୍ତ୍ରକୁ ସୁମରିବ । ଦୂତୀ ମନ୍ତ୍ରକୁ ଭଜୁଥିବ ॥
ଶ୍ରୀରଙ୍ଗ ବୀଜେ ଅଟେ ରାଧା ମନ୍ତ୍ର । ମାନସ ସେବା କର ତନ୍ତ୍ର ॥
ଶ୍ରୀରଂ ବୀଜକୁ ମନେ ଧରି । ଗୋପାଳ ମନ୍ତ୍ର ଷଡ଼ କରି ॥
ଅନନ୍ତ ଦୂତୀ ମନ୍ତ୍ର ଧର । ମାନସ ସେବା ହୃଦେ କର ॥
ରାଧା ଦୂତିକା ଗୁଣମାନ । ତୁମ୍ଭ ଅଂଶରେ ଜନ୍ମ ଘେନ ।
କହୁ ଯେ ହନ କଳି ମଧ୍ୟ । ଲୀଳା କରିବ ତୁମ୍ଭେ ଦୁଇ ॥
ଏମନ୍ତ ଭଜନ ବୃତ୍ତାନ୍ତ । ତୁମ୍ଭ ଅଙ୍ଗୁ ପାପ ମୁକ୍ତ ॥
ଏ ପୁଣ୍ୟେ ପାଞ୍ଚ ପୀଢ଼ି ଅଂଶ । ତୁମ୍ଭର କରିବେ ବିହାସ ॥
ସେଠାରୁ ଅଂଶ ଯେ ମିଳନ । ହୀନ ଜାତରେ ଥିବେ ପୁଣ ॥
ଅକୁଳ କୁଳୀନ ହୋଇବେ । ଧୂମ ମଦରାରେ ମାତିବେ ॥
ଗଞ୍ଜା ବଜରା ଭାଙ୍ଗ ଖାଇ । ଅପୁ ଉତ୍ତାରେ ଯେ ବାଇ ॥
ସ୍ନେଚ୍ଛକାର ବେଶ ଯେ ଧରିବେ । ବୈଷ୍ଣବ ଭେକ ଛାଡ଼ିଦେବେ ॥
ଅମେଧ ଅନ୍ନ ଯେ ଭକ୍ଷିବେ । ପୁଷ୍ଟାନେ ରନ୍ଧ ନ ଖାଇବେ ॥
ସୁକର୍ମ ପଥକୁ ଏଡ଼ିଣ । ପାଣ ପଠାଣ ମିଳି ପୁଣ ॥
ଅମେଧ ଆଚାର କରିବେ । ଅବାଜେ ବାଜ ଭଣାଇବେ । ୫୦ ।

ଚବିଶ ଗୋପାଳ ହେ ଶୁଣ । ରାମ ଭରଥ ଯେତେ ଗଣ ॥
ବକ ଯାଦବ ଧର୍ମ ଦାସ । ବିଷ୍ଣୁ ନନ୍ଦ ଯେ ଶୁଣ ରସ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ବିଧି । ରସ ପୁଞ୍ଜେ ଥିବ ଶୋଧି ॥
ଅବାଡ଼ ସ୍ଥ୍ୟା ଜୈଷାଠ ଲୟେ । ସମାଧି ଭକ୍ତି ଧ୍ୟାନ ଧ୍ୟାୟେ ॥
ଏ ଅଷ୍ଟଗୁଣ ସାଧୁଥିବ । ନିଷ୍ଟିନ୍ତ ସ୍ଥାନେ ବସିଥିବ ॥
ଅଷ୍ଟାଙ୍ଗ କହିଲୁ ନିସ୍ତାର । ପାରିଲେ ଏହି ପଥ ଧର ॥
ସକଳ ଶାସ୍ତ୍ର ବୃଟି ଭେଦ । ଏ ଅଷ୍ଟରସ ସାଧୁ ପଦ ॥
ଅଚ୍ୟୁତ ବଚନ ପ୍ରମାଣ । ଗୋପାଳେ ଦ୍ୱେଭୁଜର ଯେନ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ରାଧାକୃଷ୍ଣ ମାଠ ଚରିତ
ବର୍ଣ୍ଣନେ ନାମ ଏକବିଂଶ ପଟଳ ।

---

## ଦ୍ୱାବିଂଶ ପଟଳ

ମୁକୁନ୍ଦ ଅନନ୍ତ ଗୋବିନ୍ଦ । ସୁଦାମ ବାଳକ ଆନନ୍ଦ ॥
ପବନ ଉତ୍ଥାନ ମଥୁରି । କିରୂପେ ସେବା ମନେ ଧରି ॥
ମାନସ ସେବା ଭକ୍ତମାନ । କି ରୂପେ ଧରିବ ଏ ମନ ॥
ଶୁଣ ହେ ରୂପ ବେଶ ଗୁଣ । ସେବା କରନ୍ତି ସଖୀଗଣ ॥
ପ୍ରଥମେ ଆଦ୍ୟ ପ୍ରହରରେ । ଚମ୍ପା ପୁଷ୍ପ ଗୁଞ୍ଜି ହାରରେ ॥
ରାଧା ସଙ୍ଗତେ ସିଧା ଯେନ । କୃଷ୍ଣ ବେଶକୁ ଦିଅନ୍ତି ବେନ ॥
ଦ୍ୱିତୀୟ ପ୍ରହର ଯେ ଶୁଣ । ନାଗେଶ୍ୱର ପୁଷ୍ପ ଗୁଞ୍ଜିଣ ॥
ରାଧାସଙ୍ଗତେ ଚନ୍ଦ୍ରା ସଖୀ । କୃଷ୍ଣର ବେଶ ଦେଖି ସୁଖୀ ॥
ତୃତୀୟ ପ୍ରହର ହରଷେ । ମାଧବୀ ପୁଷ୍ପ ଗୁଞ୍ଜି ରସେ ॥
ରାଧା ଚନ୍ଦ୍ରାବଳୀ ମିଶିଣ । କୃଷ୍ଣର ସେବା ହରଷେଣ ॥
ଚତୁର୍ଥ ପ୍ରହରେ ହରଷ । ଗୁଞ୍ଜନ୍ତି କଦମ୍ବ ଯେ ପୁଷ୍ପ ॥
ମଦନା ସୁନ୍ଦରୀ ଯେ ସଖୀ । ବେଶ କରିବା ରାଧା ସୁଖୀ ॥

ପଞ୍ଚମ ପ୍ରହର ହରଷେ । ଗୁନ୍ଥନ୍ତି ବଉଳମାଳୀ ପୁଷ୍ପେ ॥
ରାଧା ସଙ୍ଗତେ ମଧୁବନ୍ତୀ । କୃଷ୍ଣଙ୍କୁ ବେଶ ସେ କରନ୍ତି ॥
ଷଷ୍ଠମ ପ୍ରହର ହେ ପୁଣ । ଶ୍ରୀମତୀ ସଖୀ ରାଧା ପୁଣ ॥
ଲବଙ୍ଗ ପୁଷ୍ପ ଗୁନ୍ଥି ହାର । କୃଷ୍ଣ ବେଶ ଯେ ମନୋହର ॥
ସପତ ପ୍ରହର ହୁଅନ୍ତେ । କୁନ୍ଦ ପୁଷ୍ପ ଯେ ମାଳ ଗୁନ୍ଥେ ॥
ଶଶୀରେଖା ଯେ ଗୋପୀ ତହିଁ । କୃଷ୍ଣଙ୍କୁ ବେଶ ସେ କରଇ ॥
ଅଷ୍ଟମ ପ୍ରହର ହୁଅନ୍ତେ । ବନମାଳୀ ଗୁନ୍ଥନ୍ତି ହସ୍ତେ ॥
ହରିପ୍ରିୟା ଯେ ଗୋପୀ ରାଧା । ବେଶ ସେ କରନ୍ତି ସର୍ବଦା ॥
ରାଧା ପ୍ରଥମ ପ୍ରହରେଣ । ସେବା କରନ୍ତି ସଖୀଗଣ ॥
ଦ୍ୱିତୀୟ ପ୍ରହର ହୁଅନ୍ତେ । ଚନ୍ଦ୍ରାବଳୀର ସଖୀ ଯେତେ ॥
ତୃତୀୟ ପ୍ରହର ହୁଅନ୍ତେ । ଚନ୍ଦ୍ରାବଳୀର ସଖୀ ଯେତେ ॥
ଚତୁର୍ଥ ପ୍ରହରେ ଯେ ପୁଣ । ମଦନ ସଖୀ ଯେତେ ଗଣ ॥
ପଞ୍ଚମ ପ୍ରହର ପଶନ୍ତେ । ମଧୁବନ୍ତୀର ସଖୀ ଯେତେ ॥
ଷଷ୍ଠମ ପ୍ରହରେ ଯେ ପୁଣ । ଶ୍ରୀମତୀ ସଖୀ ଯେତେ ଗଣ ॥
ସପତ ପ୍ରହର ହୁଅନ୍ତେ । ଶଶୀରେଖାଙ୍କ ସଖୀ ଯେତେ ॥
ଅଷ୍ଟମ ପ୍ରହର ହୋଇଲେ । ହରିପ୍ରିୟା ଗଣ ମିଳିଲେ ॥
କୃଷ୍ଣଙ୍କୁ ରାଧା ବେଶ କରି । ଶାୟନ କରି ମନହରି ॥
ନିତି ଦିବସ ସେବା ରସ । ଖଣ୍ଡେ ନ ଛାଡ଼େ କୃଷ୍ଣ ପାଶ ॥
ଖୋଳ କର୍ତ୍ତାଳ ବୀଣା ଆର । ଗାଆନ୍ତି ଗୁଣରେ ମଙ୍ଗଳ ॥
ଡମ୍ଫ ଝାଞ୍ଜ ଯେ ତମ୍ବୁର । ବିବିଧ ବାଦ୍ୟ ନାଦ ସ୍ୱର ॥
ମିଳି ଗାଆନ୍ତି ମନୋହର । ଷୋଳ ସହସ୍ର ସଙ୍ଗତର ॥
ଏ ଅପସରଙ୍କୁ ଧ୍ୟାଇବ । ପଦ ଆଳାପ ମିଶାଇବ ॥
ଉତ୍‌ଥାନ ସେବା ପ୍ରଥମରେ । ପବନ ଥିବ ସଙ୍ଗତରେ ॥
ଭରଥ ଦାସ ସଙ୍ଗେ ଘେନ । ଗାୟନ ସେବା କର ତିନ ॥
ବାଳକ ବୃନ୍ଦାବନ ଦୁଇ । ଧରମୁ ଦାସ ସଙ୍ଗେ ନେଇ ॥
ସେବା କରିବ ତିନ ଜଣ । ଦ୍ୱିତୀୟ ପ୍ରହର ଯେ ପୁଣ ॥

ତୃତୀୟ ପ୍ରହର ଯେ ସେବା । ମଧୁ ମଥୁର ଧାଆଇବା ॥
ବିଷ୍ଣୁ ଦାସଙ୍କୁ ସଙ୍ଗତର । ଗାପ୍ସନ ବିଧି ସେବା କର ॥
ଚତୁର୍ଥ ପ୍ରହର ମିଳନ । ସୁଦାମ ବସ୍ତ୍ର ତନ୍ନଜଣ ॥
ବଙ୍କ ଯାଦବ ଦାସ ଥିବ । ଗାପ୍ସନ ସେବାରେ ମିଳିବ ॥
ପଞ୍ଚମ ପ୍ରହର ଯେ ଦୋଷ । ସୁଦାମ ଆନନ୍ଦ ହରଷ ॥
ଦକ୍ଷିଣ ଚନ୍ଦ୍ର ଦାସ ସଙ୍ଗ । ଗାପ୍ସନ ସେବା କର ରଙ୍ଗ ॥

ଯାଦବ ବୃନ୍ଦାବନ ଦୁଇ । ଷଷ୍ଠମ ପ୍ରହର ଯେ ଦ୍ରୋଇ ॥
ନିରଞ୍ଜନ ଯେ ଥିବ ସଙ୍ଗେ । ଗାପ୍ସନ ସେବା କର ରଙ୍ଗେ ॥
ସପତ ପ୍ରହର ହୁଅନ୍ତେ । ନନ୍ଦ କନ୍ଦ ବେନି ମିଶନ୍ତେ ॥
କମାର ରାମ ସଙ୍ଗତରେ । ଗାପ୍ସନ ସେବା କର ଧୀରେ ॥
ଅଷ୍ଟମ ପ୍ରହର ସମ୍ପୂର୍ଣ୍ଣ । ମୁକୁନ୍ଦ ଅନନ୍ତ ଢ'ଜଣ ॥
ରାମ ଦାସ ଯେ ସେବା ଧୀରେ । ମିଳନ ଅଚ୍ୟୁତ ସଙ୍ଗରେ ॥
ବନ୍ଶୀ ରାମ ଯେ ଥିବ ମିଳି । ଗାପ୍ସନ କର ରସକେଳି ॥
ସମସ୍ତ ରସ ଯେ ସମ୍ପୂର୍ଣ୍ଣ । ଅଚ୍ୟୁତ ପଚଶ ଯେ ଜାଣ ॥
ଏ ତନ୍ନ ସେବା ମନେ ଧର । ବ୍ରଜଭୁବନ ମଧ୍ୟେ କର ॥
ଷୋଳ ସହସ୍ର ଅଚ୍ୟୁତର । ରସିକ ବାର ସସ୍ର ସାର ॥

ଯୋଗାରୂଢ଼ ସ୍ୱର ସହସ୍ର । ଷୋଳ ସହସ୍ର ସଙ୍ଗେ ମିଶ ॥
ଅଷ୍ଟମ ପ୍ରହରର ରସ । ଚବ୍ଶ ଗୋପାଳ ଦ୍ୱେ ଘୋଷ ॥
ଚବ୍ଶ ମୂଳେ ଷୋଳ ସସ୍ରେ । ମିଳି କଶବ ରସ ଅଗ୍ରେ ॥
ଏମନ୍ତ ସଖୀ ସେବା ରସ । ରାଧା କୃଷ୍ଣର ଗୁଣ ଘୋଷ ॥
ବାର ଗୋପାଳ ରାହାସର । ଯୋଗାରୂଢ଼ ଯେ ବାର ସାର ॥
କର୍ଣ୍ଣଦାସ ଯେ ଯୋଗାରୂଢ଼ । ତାରବ ଗୋପକୁଳ ମୂଢ଼ ॥
ରାହାସ ଦାସ ବାର ତୁମ୍ଭେ । ତାରବ ସସାର ଆରମ୍ଭେ ॥
ଗୋପାଳ କୁଳକୁ ତାରବ । ରାହାସ ସଙ୍ଗେ ମିଶାଇବ ॥
ସୃଷ୍ଟିକାଳ ଅଠର ପାଟ । ଛତିଶ କୁଳୀ ବର୍ଣ୍ଣ ଘାଟ ॥
ତୁମ୍ଭଙ୍କୁ ଦେଖି ତୋଷ ହେବେ । ଅଷ୍ଟ ରତନ ଯାଚ ଦେବେ ॥

ହରି ବର୍ଣିକ କର ସାର । ରାଧା କୃଷ୍ଣ ଗୁଣ ସୁମର ॥
ଏ ଅଷ୍ଟ ପ୍ରହର ଗୁଣିମ । ଗାୟନ କର ମନୋରମ ॥
ସଂସାର ସାର ହରି କଥା । ଆଉ ଯେତେକ କଥା ମିଥ୍ୟା ॥
ଅଚ୍ୟୁତ କଥା ମନେ ଧର । ଦ୍ୱାଦଶ ଗୋପାଳେ ସୁମର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ବୃନ୍ଦାବନ ଖଣ୍ଡେ
ଅଷ୍ଟ ପ୍ରହର ସଖୀ ସେବା କଥନେ
ନାମ ଦ୍ୱାବିଂଶ ପଟଳ ।

---

## ତ୍ରୟୋବିଂଶ ପଟଳ

ମୁକୁନ୍ଦ ଅନନ୍ତ ଧରମ । ଆଜ୍ଞା ଯେ କଲେ ଗୁରୁବ୍ରହ୍ମ ॥
କେବଣ ଦଗେ ଗୋପୀ କେତେ । କହିବା ଆମ୍ଭଙ୍କୁ ଯୁଗତେ ॥
ପୂର୍ବ ଦଗର ଗୋପୀମାନ । ଶୁଣ ହେ ମଥୁରା ପବନ ॥
ଲଳିତା ବୃନ୍ଦା ମଧୁବନ୍ତୀ । ଚମ୍ପା ଦମୁଣା ମଦନାବତୀ ॥
ସୁରେଖା ତ୍ରିପୁରା ଯେ ପୁଣ । ଅଛନ୍ତି ଏ ଅଷ୍ଟ ଦଳେଣ ॥
ଷୋଳ ଯେ ଲକ୍ଷ ଗୋପୀ ତହିଁ । ଅଷ୍ଟ ନାୟିକା ସଙ୍ଗେ ରହି ॥
ସୁମର ଗୋବିନ୍ଦ ହେ ବନ୍ଧୁ । ଐଶାନ୍ୟ କୋଣର ପ୍ରତ୍ୟକ୍ଷ ॥
ସୁଭଦ୍ରା ରଙ୍ଗଦେବୀ ଦୁଇ । ଅହଲ୍ୟା ତାରା ଗୋପୀ ତହିଁ ॥
ତିଲୋତ୍ତମା ମାଳତୀ ବେନି । ଯୁଆଡ଼ ଜଣେ ସଖୀ ଘେନି ॥
ବୃତ ଯେ ଲକ୍ଷ ସଙ୍ଗେ ତହିଁ । ଈଶାଣ କୋଣେ ସେବା ରହି ॥
ଗୋବିନ୍ଦ ବାଳକ ହେ ଶୁଣ । ଉତ୍ତରେ ଯେତେ ଗୋପୀଗଣ ॥
ଧନ୍ୟା ଶ୍ରୀମତୀ ଶଶୀରେଖା । ଦୂତିକା ସଙ୍ଗେ ଯେତ୍ତୁ ସଖା ॥
ସୁଶୀଳା ଗୋପୀଛନ୍ତି ତହିଁ । ଷଡ଼ ଯେ ଲକ୍ଷ ସଙ୍ଗ ହୋଇ ॥
ଶୁଣ ହେ ଯାଦବ ଗୋବିନ୍ଦ । ବାୟବ୍ୟ କୋଣ ଗୋପୀବୃନ୍ଦ ॥

ସର୍ବ ସୁନ୍ଦରୀ ଛନ୍ତି ତହିଁ । କୁମାରୀ କାମ ସଖୀ ତହିଁ ॥
ମେନକା ବିଦ୍ୟାଧରୀ ଛନ୍ତି । ରମା ସୁଷମା ଆଦି ଛନ୍ତି ॥
ଶାକାମ୍ବରୀ ଯେ ଛନ୍ତି ତହିଁ । ଚୁରି ଲକ୍ଷ ଯେ ଗୋପ ଗୋଇ ॥
ଶୁଣ ବାଳକ ବୃନ୍ଦାବନ । ପଶ୍ଚିମ ଦିଗ ଗୋପୀଜନ ॥
ବିଶାଖା ଗୋପୀ ଛନ୍ତି ତହିଁ । କମଳା ଭୂଜୁସା ଯେ ଦୁଇ ॥
ଜାମ୍ବବତୀ ଯେ ସତ୍ୟଭାମା । ରୁକ୍ମିଣୀ ଲକ୍ଷ୍ମୀ ଯେ ଉତ୍ତମା ॥
ଶତଶ୍ରିୟା ଶାରଦା ଛନ୍ତି । ବିମଳା ଗୋପୀ ବିହରନ୍ତି ॥
ପାଞ୍ଚ ଯେ ଲକ୍ଷ ସଖୀଗଣ । ଅଛନ୍ତି ପଶ୍ଚିମ ଦିଗେଣ ॥
ଶୁଣ ପବନ ମନ ଦେଇ । ନୈର୍ଋତ କୋଣ ରସ ବହି ॥
ଅହଲ୍ୟା ତାରା ମନ୍ଦୋଦରୀ । ଶଚୀଉରୀ ରେବତୀ ବିହରି ॥
ଦ୍ରୌପଦୀ କାନ୍ତିମାଳା ଛନ୍ତି । ସୁକୁମାରୀ ଯେ ବିହରନ୍ତି ॥
ଷଡ଼ ଯେ ଲକ୍ଷ ଗୋପୀଗଣ । ଅଛନ୍ତି ନୈର୍ଋତ ଦିଗେଣ ॥
ଶୁଣ ହୋ ରାମଭଦ୍ର ଦାସ । ଧରମୁ ବିଷ୍ଣୁ ବଳ ଘୋଷ ॥
ଦକ୍ଷିଣ ଦିଗେ ଯେତେ ସଖୀ । ଅଛନ୍ତି କେ ପାରିବ ଲେଖି ॥
ପଦ୍ମା ଯେ ତିଲୋତ୍ତମା ତହିଁ । ବିଦ୍ୟାଧରୀ ଅଛନ୍ତି ରହି ॥
ଅର୍ଣ୍ଣପୂର୍ଣ୍ଣା କୁଣ୍ଡଳା ବେନି । ଶାକାମ୍ବରୀ ମଦାଳସୀ ଘେନି ॥
ଦଶ ଯେ ଲକ୍ଷ ଗୋପୀଗଣ । ଅଛନ୍ତି ଦକ୍ଷିଣ ଦିଗେଣ ॥
ଦକ୍ଷିଣ ଦିଗର ରଚନା । ରାମ କୁମାର ମନେ ଘେନ ॥
ଶ୍ରୀମତୀ ମାଳତୀ ଯେ ଦୁଇ । ରତନା ମାଳ୍ପକୁ ଯେ ଦୁଇ ॥
ସୁଗନ୍ଧା ଚନ୍ଦ୍ରା ତନ ଛନ୍ତି । ଦକ୍ଷିଣା ଗୋପୀ ବାହାରନ୍ତି ॥
ପରମ ଲକ୍ଷ୍ମୀ ଛନ୍ତି ତହିଁ । ପରମାନନ୍ଦ ଯୋଗ ସେହି ॥
ଏ ଅଗ୍ନି କୋଣର ବିସ୍ତର । ଏ ଗୋପୀଗଣ ଧ୍ୟାନ କର ॥
ଷଢ଼ ଯେ ଲକ୍ଷ ପରିବାରୀ । କୃଷ୍ଣର ସେବାମାନ କରି ॥
ସତ ତିରଶ ଲକ୍ଷ ଗୋପୀ । କୃଷ୍ଣ ସେବାରେ ସେ ନିରୋପି ॥
ଚଉଷଠୀ ଯେ ଗୋପୀସାର । ଏ ଅଷ୍ଟ କୋଣରେ ବିହାର ॥
ଗୋପୀ ଭାବରେ ସେବାକରି । ଶ୍ରୀକୃଷ୍ଣ ସେବା ଯେ ବିସ୍ତରି ॥

ଟୁବୁକ ପ୍ରଥମ ଦଳେଣ । କୁଙ୍କୁମ ବର୍ଣ୍ଣ ତାଙ୍କ ବର୍ଣ୍ଣ ॥
ଗନ୍ଧ ଚନ୍ଦନ ସେବା କରି । କୃଷ୍ଣର ସେବା ମନେ ଧରି ॥
ଉତ୍ତର ଦଗେ ସଖୀ ଗଣ । ଧନ୍ୟା ନାମେ ଯେ ଗୋପୀ ପୁଣ ॥
ବୈଦୂର୍ଯ୍ୟ କାନ୍ତି ତାହାଙ୍କର । ରତନ ଝରି ଶୋଭା ସାର ॥
ସେବ୍ୟା ଯେ ବାୟୁବ୍ୟ କୋଣରେ । କର୍ପୂର ପଞ୍ଚାମୃତ କରେ ॥
ଖଣ୍ଡ କ୍ଷିର ଅମୃତ ଦେଇ । ଶ୍ରୀକୃଷ୍ଣ ସେବାରେ ସେ ରହି ॥
ବିଶାଖା ପଶ୍ଚିମ ଦଗରେ । ବୀଣା ଗାୟନ ସେବା କରେ ॥
ଅହ୍ଲା ନୈର୍ଋତ କୋଣରେ । ତାମ୍ବୂଲ ସେବା ସେହୁ କରେ ॥
ପଦ୍ମା ଯେ ଦକ୍ଷିଣ ଭାଗରେ । ଅରୁଣ ବର୍ଣ୍ଣ ଶୋଭା କରେ ॥
ଅମୃତ ଗୋଟିକା ଭୁଞ୍ଜନ୍ତି । ପକ୍ଷୀ ଭ୍ରମର ଯେ ଚାଳନ୍ତି ॥
ଶ୍ରୀମତୀ ଅଗ୍ନି ଯେ କୋଣରେ । ମୃଦଙ୍ଗ ତାଳ ଧରି କରେ ॥
ଗୁଣ୍ଠଶ୍ରୀ ସଗେ ଗୀତ ଗାଇ । ଶ୍ରୀକୃଷ୍ଣ ସେବାରେ ସେ ରହି ॥
ଗୋପୀଙ୍କ ଭାବ ମନେ ଧରି । ସେବା କରିବ ମନ୍ତ୍ର ସ୍ମରି ॥
ମୁକୁନ୍ଦ ଅନନ୍ତ ଯେ ଦୁଇ । ଗୁରୁ ବନ୍ଦନ ସେବା ଧ୍ୟାଇ ॥
ଉଦ୍ଧାନ ପବନ ଯେ ବେନି । ନୈର୍ଋତ କୋଣ ସେବା ଘେନି ॥
ଆନନ୍ଦ ଗୋବିନ୍ଦ ଯେ ଦୁଇ । ଉତ୍ତର ଦଗେ ସେବା ଧ୍ୟାଇ ॥
ବାୟୁବ୍ୟ ଦଳ ସେବା ପୁଣ । ମଥୁସ୍ତ୍ରୀ ଆଗ୍ରେ କରେ ପୁଣ ॥
ପଶ୍ଚିମ ଦଗ ସେବା କନ୍ଧ । ଆନନ୍ଦ ବାସୁଦେବ ରହି ॥
ନୈର୍ଋତ ଦଗ ସେବାମାନ । ସୁଦାମ ମନେ ତୁମ୍ଭେ ଘେନ ॥
ଯାଦବ ବୃନ୍ଦାବନ ଦୁଇ । ଦକ୍ଷିଣ ସେବା କର ଯାଇ ॥
ବାଳକ ବୃନ୍ଦାବନ ଦାସ । ଅଗ୍ନି କୋଣରେ ସେବା ଘୋଷ ।
ବସ୍ତ୍ର ଯେ ଅଗ୍ନି କୋଣ ସେବ । ଦ୍ୱାଦଶ ଗୋପାଳ ସେବିବ ।
ଖୋଳ କଂସାଳ ରାସ ଲୀଳା । ଆନନ୍ଦ ରସେ ହୋଇ ଭୋଳା ॥
ଗୋପାଳ ମନ୍ତ୍ର ସେବା କରି । ଷୋଡ଼ଶ ମନ୍ତ୍ରକୁ ସୁମରି ॥
ଆଠ ଦୁଗୁଣେ ଷୋଳ ହୋଇ । ଅଠ ଦଅଠେ ଷୋଳ କହି ॥
ହରେ ଶବ୍ଦ ପୂର୍ବେ ବସେ । ରାମ ଶବ୍ଦ ଈଶାନ୍ୟେ ସେ ॥

କୃଷ୍ଣ ଶବଦ ଉତ୍ତରେଣ । ଶ୍ୟାମ ଶବଦ ବାୟୁବ୍ୟେଣ ॥
ହ୍ରୀଁ ଯେ ପଶ୍ଚିମ ଭାଗରେ । ଶ୍ରୀଁ ଯେ ନୈର୍‌ଋତ ଦଗରେ ॥
କ୍ଲୀଁ ଯେ ଦକ୍ଷିଣରେ ବସେ । ଦାମ ଯେ ଅଗ୍ନି କୋଣରେ ସେ ॥
ନନ୍ଦ ପୂରୁବେ ପରକାଶ । କନ୍ଦ ଈଶାନ କୋଣେ ଘୋଷ ॥
ବନ ଉତ୍ତର ଦଗେ ପୁଣ । ଧର୍ମ ଯେ ବାୟୁବ୍ୟରେ ଜାଣ ॥
ସାଧୁ ପଶ୍ଚିମ ଦଗେ ରହେ । ମଧ୍ୟ ନୈର୍‌ଋତ ଦଗ କହେ ॥
କାମ ଦକ୍ଷିଣ ଦଗେ ବସେ । ବ୍ରହ୍ମ ଅଗ୍ନି କୋଣେ ପ୍ରକାଶେ ॥
ଷୋଡ଼ଶ ମନ୍ତ୍ର ଜପ କରେ । ସତ ଦୟା ଯେ କ୍ଷମା କରେ ॥
ଶାନ୍ତ ଚତ୍ତରେ ରହେ ମନ । ପର ଦାର୍ରେ ନାହିଁ ଧ୍ୟାନ ॥
ସେମାନେ ଏ ସ୍ଥଳ ଲଭନ୍ତି । ଦେହାନ୍ତେ ସେବାରେ ରହନ୍ତି ॥
କ୍ଲୀଁ ଯେ ପୂର୍ବେ ପରକାଶ । କୃଷ୍ଣାୟ ଐଶାନ୍ୟରେ ଘୋଷ ॥
ଗୋବିନ୍ଦାୟ ଯେ ଉତ୍ତରେଣ । ଗୋପୀଜନ ଯେ ବାୟୁବ୍ୟେଣ ॥
ବଲ୍ଲ ପଶ୍ଚିମ ଦଗେ ବସେ । ଭାୟ ଯେ ନୈର୍‌ଋତେ ପ୍ରକାଶେ ॥
ସ୍ୱାହା ଦକ୍ଷିଣ ଦଗେ ପୁଣ । ନମଃ ଅଗ୍ନି କୋଣେଣ ଜାଣ ॥
ନମ ବୋଲି ଯେ ଦଣ୍ଡବତ । ସ୍ୱାହାରେ ମଣୋହି ସଂଯୁତ ॥
ଆଠ ଦଗୁଣେ ଯେ ଅଠର । ଗୋପାଳ ମନ୍ତ୍ରଙ୍କର ସାର ॥
ଅନନ୍ତ ମୁକୁନ୍ଦ ବାରଟି । ଗୋପାଳ କୁଳ ଲବଣଟି ॥
ମୂଢ଼ ଅଟନ୍ତି ଗୋପକୁଳ । ଗ୍ରାମ ଭରଥ କର ଠୂଳ ॥
ଧରମୂ ବଷ୍ଟୁ ବନ୍ଧ ପଞ୍ଚ । ଗୋପାଳ କୁଳେ ତୁମ୍ଭେ ଉଚ ॥
କମାର କୁମ୍ଭାର ଯେ ଗ୍ରାମ । ଦକ୍ଷିଣ ଚନ୍ଦ୍ର ଯେ ଉତ୍ତମ ॥
ଗୋପାଳ କୁଳେ ବୁଝାଇବ । ରସ ଗୁଣକୁ ଶିଖାଇବ ॥
ଅତ ଶ୍ରଦ୍ଧାରେ ଯେଉଁ ନର । ମତ୍ସ୍ୟ ଯେ ଖାଇବ ମୁଖର ॥
ଧୂମ ଗନ୍ଧାରେ ଯାର ଚତ୍ତ । ଗ୍ରେଷ୍ଠ କରିବ ପର ବତ୍ତ ॥
ପର ରମଣୀ ଯେ ହରିବ । ମୁଖରେ ମିଛ ଯେ କହିବ ॥
ଏ ଗ୍ରନ୍ଥ କରିବ ଗୁପତ । ଫେଡ଼ିଲେ ବପତ୍ତି ପଡ଼େ ତ ॥
ମାତା ପିତାଙ୍କୁ ଯେ ସେବବ । ଗୁରୁଙ୍କ ଯେ ସେବା କରିବ ॥

ମୌସ୍ତ୍ରବ କରି ଅନ୍ନ ଦେବ । ପ୍ରଶ୍ରୁ ସ୍ନାହ୍ନନ କରିବ ॥
ଅଡଥ ପୂଜା ଯେ କରିବେ । ମୁଖରେ କୃଷ୍ଣ ମନ୍ତ୍ର ଥିବ ॥
ଦୁର୍ଭିକ୍ଷେ ଅନ୍ନ ଦାନ ଦେବ । ଏ ଗ୍ରନ୍ଥ ତାହାକୁ କହିବ ॥
ଅଚ୍ୟୁତ ବଚନ ଯେ ସାର । ଚବ୍ୱିଶ ଗୋପ ମନେଧର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ରସ ଗୁଣ
କଥନେ ନାମ ତ୍ରୟୋବିଂଶ ପଟଳ ।



## ଚତୁର୍ବିଂଶ ପଟଳ

ମୁକୁନ୍ଦ ଅନନ୍ତ ପାମର । ପରମ ଗୁରୁ କୃପାକର ॥
ଗୋପୀଙ୍କ ମହିମା ଶୁଣିଲୁ । ଗୋପାଳ ନାମ ନ ଜାଣିଲୁ ॥
ଶୁଣ ହୋ ଗୋପର କୁମର । ମୁକୁନ୍ଦ ହେତୁ ମନେ ଧର ॥
ପୂରୁବ ଦିଗରେ ଗୋପାଳ । ଉଦ୍ଧବ ସଙ୍ଗେ ଯୁଥ ମେଳ ॥
ସତର ସହସ୍ର ଯେ ଯୁଥ । କୃଷ୍ଣର ଲୀଳାରେ ଉନ୍ମତ୍ତ ॥
ରୋହିଣୀ ଗାଈ ତହିଁ ସାର । ସାତଶ ପଦ୍ମ ଧେନୁ ଆର ॥
କାନନ ବନ ଯେ ଦିଗରେ । କୃଷ୍ଣ ଗୋପାଳ ଲୀଳା କରେ ॥
ଐଶାନ୍ୟ କୋଣର ଗୋପାଳ । ସାତ୍ତ୍ୱିକ ଅଟେ ମୋକ୍ଷ ମୂଳ ॥
ସୁରଭି ନାମେ ଧେନୁ ତହିଁ । ସତର ଖେଉଣୀ ଯେ ଗାଈ ॥
ଖଦିର ବନରେ ବିହରି । କୃଷ୍ଣ ଗୋପାଳ ମିଳିକରି ॥
ଶିଙ୍ଗା ଯେ ବେଣୁ ବଜାବନ୍ତି । ସହସ୍ରେ ଗୋପାଳ ଅଛନ୍ତି ॥
ଉତ୍ତର ଦିଗ ଗୋପସୁତ । ଅଛନ୍ତି ଏମନ୍ତ ଭାବେ ତ ॥
ବହୁଳା ନାମେ ଗାଈ ସାର । ତେର ଖେଉଣୀ ସଙ୍ଗେ ତାର ॥
ବଂଶ ଯେ ବନରେ ରହନ୍ତି । କୃଷ୍ଣର ନିଜ ନାମ ଚନ୍ଦ୍ର ॥
ଯାଦବ ଗୋପାଳ ଯେ ସାର । ତିନି ସହସ୍ର ତା ସଙ୍ଗର ॥
ବାୟବ୍ୟ କୋଣ କଥା ଶୁଣ । ଶ୍ରୀକୃଷ୍ଣ ତହିଁରେ ଆପଣ ॥

ଅବତାର ଯେ କୃଷ୍ଣ ତହିଁ । ଲୀଳାରଙ୍ଗ ଯେ ଲୀଳା ଭୂଇଁ ॥
ଯମୁନା କଦମ୍ବର କୂଳ । ଗୋପ ନବର ନନ୍ଦ ସ୍ଥଳ ॥
ଷୋଳ ସହସ୍ର ଗୋପ ପୋଏ । ନନ୍ଦର ସେବାରେ ସେ ଥାଏ ॥
ବଉଳା ନାମେ ଗାଈ ତହିଁ । ତେର ଖେଉଣୀ ସଙ୍ଗେ ରହି ॥
ସିଙ୍ଘ ଯେ ବନରେ ଚରନ୍ତି । ନନ୍ଦ ଗୋପାଳ ତହିଁ ସ୍ଥିତ ॥
ପଶ୍ଚିମ ଦିଗର ବିସ୍ତାର । ଗୁପତ ବହୁତ ବିସ୍ତର ॥
ରାମକୃଷ୍ଣ ଯେ ଦୁଇ ଭାଇ । ଅବତାର ସ୍ୱେ ରୂପ ହୋଇ ॥
ପୃଥୁନା ନାମେ ଗାଈ ତହିଁ । ପନ୍ଦର ଖେଉଣୀ ସଙ୍ଗହିଁ ॥
ସୁଦାମ ପୂରୁବ ଭାଗର । ଦାମ ଯେ ପଶ୍ଚିମ ଦିଗର ॥
ଦାମ ସୁବାହୁ ଉତ୍ତରେଣ । ଶ୍ରୀବତ୍ସ ଦକ୍ଷିଣ ଦିଗେଣ ॥
ପଞ୍ଚ ଶାଖା ଯେ ରାମକୃଷ୍ଣ । ପଶ୍ଚିମ ଦିଗେ ନୀଳା ଶ୍ରେଷ୍ଠ ॥
ତିନି ସହସ୍ର ଗୋପସାର । ଅଛନ୍ତି ପଶ୍ଚିମ ଭାଗର ॥
ନୈଋତ କୋଣ କଥା ଶୁଣ । ଗୋପାଳ ତହିଁରେ ଯେ ପୁଣ ॥
ପଦ୍ମା ଯେ ନାମେ ଧେନୁ ତହିଁ । ସତର ଖେଉଣୀ ସେ ଗାଈ ॥
ସାତ ସହସ୍ର ଗୋପବାଳ । ଆନନ୍ଦ ନନ୍ଦ ତହିଁ ମେଳ ॥
କେଳି-ସୁନ୍ଦର ନାମେ ବନ । କୃଷ୍ଣର ଲୀଳା ରମ୍ୟ ସ୍ଥାନ ॥
ଦକ୍ଷିଣ ଦିଗର ବିସ୍ତର । ଗୋପାଳ ଯେତେ ସଙ୍ଗେ ତାର ॥
ନୀଳା ଯେ ନାମେ ଗାଈ ତହିଁ । ସାତ ଖେଉଣୀ ତହିଁ ରହି ॥
ମଳୟ ବନରେ ଚରନ୍ତି । ସାତଶ ଗୋପାଳ ଯେ ଯେତି ॥
ସାତ୍ତ୍ୱିକ ଗୋପାଳ ଯେ ମୋକ୍ଷ । କୃଷ୍ଣର ଲୀଳାରେ ଯେ ଦକ୍ଷ ॥
ଅଗ୍ନି କୋଣର କଥା ଯେତେ । କେ ମୁଖେ କହିବ ତା କେତେ ॥
ରମ୍ଭା ନାମେଣ ଗାଈ ସାର । ସତର ଖେଉଣୀ ସଙ୍ଗର ॥
ଷୋଳ ସହସ୍ର ସେ ସଙ୍ଗର । ସଉନନ୍ଦ ବରଜ ସାର ॥
ବାଳକମାନଙ୍କ ସଙ୍ଗର । ଭାଣ୍ଡିର ବନରେ ବିହାର ॥
ଏ ଅଷ୍ଟ ଦିଗେ ହୋଇ ମେଳ । ଛୟାଶୀ ସହସ୍ର ଗୋପାଳ ॥
ଅଣସ୍ତରି ଖେଉଣୀ ଗାଈ । କୋଡ଼ିଏ ଶଙ୍ଖ ଛନ୍ତି ତହିଁ ॥
ସାତ ପଦ୍ମ ଯେ ଧେନୁ ସାର । ଅଛନ୍ତି ଏ ଅଷ୍ଟ ଦିଗର ॥

ଆ ଅଷ୍ଟରେ ଚଉଷଠୀ । ବନରେ କରନ୍ତି ଗୋଷ୍ଠି ॥
ଚୌଷଠୀ ଗୋପାଳ ଯେ ସାର । ତହିଁରୁ ବାର ମୋକ୍ଷ ଆର ॥
ବାରରୁ ପାଞ୍ଚ ସାର ହୋଇ । ପାଞ୍ଚରୁ ବେନି ସାର କହି ॥
ଦାମ ସୁଦାମ ବେନି ଶାଖା । ରାମକୃଷ୍ଣ ଯେ ବେନି ଏକା ॥
ରାମ ଦକ୍ଷିଣେ ଦାମ ରହେ । କୃଷ୍ଣ ଦକ୍ଷିଣେ ସୁଦାମ ହେ ॥
ସୁବାହୁ କୃଷ୍ଣ ବାମେ ରହେ । ସୁବଳ ରାମ ବାମେ ଥାଏ ॥
ଗୋପ ମଣ୍ଡଳ ମଧ୍ୟେ ଶୋଭା । ଶ୍ରୀବତ୍ସ କରନ୍ତି ଯେ ସଭା ॥
ରାମ କୃଷ୍ଣ ଦାମ ସୁଦାମ । ସୁବାହୁ ସୁବଳ ଉତ୍ତମ ॥
ମଧ୍ୟରେ ଷଡ଼ ଶାଖା ରହି । ସମ୍ମୁଖେ ଶ୍ରୀବତ୍ସ ଅଛଇ ॥
ତାହାକୁ ବେଢ଼ି ଗୋପଗଣ । ମଣ୍ଡଳ କରଣ ଭିଆଣ ॥
କଂସାଳ ତାଳ ବେଣୁ ଶିଙ୍ଗା । ଶଙ୍ଖ ବଇଁଶୀ ଯେ ମୃଦଙ୍ଗା ॥
ଗାଈ ଚରାଇ ଗୀତ ଗାଇ । ଗୋପାଳ ମଣ୍ଡଳୀ ଭିଆଇ ॥
ଦ୍ୱାଦଶ ବନେ ଦିନେ ଦିନେ । ଲୀଳା କରନ୍ତି ଗୋପଗଣେ ॥
କ୍ଷୀର ଲବଣୀ ଖଣ୍ଡ ଗୁଡ଼ । ନଡ଼ୁ ପୋଡ଼ ପିଠା ପାପଡ଼ ॥
ନବାତ ଛେନା ବସା ଦହି । ଆଚାର ଆମ୍ବୁଲ ମିଠାଇ ॥
ବନରେ ବନ ଭୋଜ କରେ । ନିତ୍ୟ ଗୋଲୋକରେ ବିହରେ ॥
ଗୋଲୋକ ଲୀଳା ଗୋପପୁର । ରଚିଲେ ଶ୍ରୀ ବୃନ୍ଦାବନର ॥
ଶ୍ରୀ ଗୋପ ଗୋପାଳ ସୁମର । ଏ ଭବ ଜଳୁଁ ହେବ ପାର ॥
ଖୋଳ କର୍ତ୍ତାଳ ଗୀତ ଗାଇ । ଶ୍ରୀ ଗୋପ ଗୋଲୋକକୁ ଧାଇ ॥
ଉଦ୍ଧାର ଗୋପକୁଳ କର । ଓଡ଼ରାଷ୍ଟ୍ରରେ ରଚ ଘର ॥
ମୁକୁନ୍ଦ ରାମ ଅନନ୍ତ ହେ । ଭୃଥ ପବନ ଧର୍ମୁ କହେ ॥
କୃଷ୍ଣ ଉତ୍ଥାନ ବନ ଶୁଣ । । ଯାଦବ ଦକ୍ଷିଣ ଚନ୍ଦ୍ରେଣ ॥

ନିରଞ୍ଜନ ବେଦେହେ ବସ୍ତ୍ର । ଗୁପତ କହିଲି ପ୍ରତ୍ୟକ୍ଷ ॥
ଅଚ୍ୟୁତଗଣେ ଯେତେ ଦାସ । ଏ ଗ୍ରନ୍ଥ ପଢ଼ି ପାପ ନାଶ ॥
ପଞ୍ଚ ଶାଖାଙ୍କୁ ସୁମରିବ । ପଞ୍ଚ ଅକ୍ଷରକୁ ଗୁଣିବ ॥
ଅକାଳମାନ କ୍ଷୟ ଯିବ । ଅଚ୍ୟୁତ ବଚନ ପାଳିବ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ଗୋପାଳ
ଗାବ ଅଷ୍ଟଦଶ ବର୍ଣ୍ଣନେ ନାମ ଚତୁର୍ବିଂଶ ପଟଳ ।

—:*:—

## ପଞ୍ଚବିଂଶ ପଟଳ

ମୁକୁନ୍ଦ ଗୋବିନ୍ଦ ବିଗ୍ରହୁ । ଗୋପାଳ ସେବା କ ରୂପରୁ ॥
କହିବା ତହିଁର ବିଗ୍ରହ । ଅନନ୍ତ ହେତୁ ମନେ ଧର ॥
ପ୍ରଥମ ପ୍ରହରେ ଯେ ପୁଣ । ସ୍ତୋକ ଗୋପାଳ ସେବା ଜାଣ ॥
ଦ୍ୱିତୀୟ ପ୍ରହରେ ସେବା । ବୃଶାଳ ଗୋପାଳ ସେବିବା ॥
ତୃତୀୟ ପ୍ରହର ଯେ ହୋଏ । ବିଶାଳ ଗୋପାଳ ସେବାଏ ॥
ଜୟ ମାଧବ ଗୋପାଳ ସେ । ଚତୁର୍ଥ ପ୍ରହର ସେବା ସେ ॥
ପଞ୍ଚମ ପ୍ରହରେ ସେ ପୁଣ । ଅର୍ଜ୍ଜୁନ ଗୋପାଳ ସେବଣ ॥
ଅଷ୍ଟମ ପ୍ରହରର ଅନ୍ତ । ସୁବଳ ଗୋପାଳ ଉଚିତ ?
ଷଷ୍ଠମ ପ୍ରହର ହୁଅନ୍ତେ । ସୁବଳ ଗୋପାଳ ସେବନ୍ତେ ॥
ସପତ ପ୍ରହରେଣ ପୁଣ । ବିନୋଦ ଗୋପାଳ ସେବଣ ॥
ଅଷ୍ଟମ ପ୍ରହର ସମ୍ପୂର୍ଣ୍ଣ । ଶ୍ରୀବନ୍ତ ଗୋପାଳ ସେବଣ ॥
ଚମ୍ପକ ପୁଷ୍ପମାଳ ସେବା । ସ୍ତୋକ ହେ ଗୋପାଳ ସେବିବା ॥
ନାଗେଶ୍ୱର ଯେ ପୁଷ୍ପ ଦେଇ । ବୃଷଭ ଗୋପାଳ ସେବଇ ॥
ମାଧବୀ ପୁଷ୍ପ ଦେଇ ମାଳ । ସେବଇ ବିଶାଳ ଗୋପାଳ ॥
କଦମ୍ବ ପୁଷ୍ପମାଳ ଦେଇ । ଜୟମାଧବ ଯେ ସେବଇ ॥
ବଇଜୟନ୍ତ ପୁଷ୍ପ ସେବା । ଅର୍ଜ୍ଜୁନ ସାତ୍ତ୍ୱିକ ସେବିବା ॥

ଲବଙ୍ଗ ପୁଷ୍ପମାନ ଦେଇ । ସୁବଳ ଗୋପାଳ ସେବଇ ॥
କୁନ୍ଦ ପୁଷ୍ପ ଯେ ଗୁନ୍ଥି ମାଳ । ବିନୋଦ ନାମେଣ ଗୋପାଳ ॥
ବନମାଳ ଯେ ପୁଷ୍ପ ଧଣ୍ଡା । ସୁବର୍ଣ୍ଣ ଗୋପାଳ ଯେ ମଣ୍ଡା ॥
ମଣ୍ଡିଣ ପୁଷ୍ପ ସେବାକରେ । ଯୁଥ ଗୋପାଳ ଏ ସଙ୍ଗରେ ॥
ରାହାସେ ପୁଷ୍ପ ସେବା କରି । ଭ୍ରମର ପଙ୍ଖାମାନ ଧରି ॥
ଏ ଅଷ୍ଟ ପ୍ରହର ଜଗିଣ । ପୁଷ୍ପ ଯେ କରନ୍ତି ଭୂଷଣ ॥
ଏହି ଭାବରେ ମନ ଦେଇ । ସଖା ଭକତ ଭାବ ହୋଇ ॥
ରାହାସେ ପୂର୍ଣ୍ଣ ଅଣାଇବ । ସଖୀ ଭାବରେ କୃଷ୍ଣେ ଦେବ ॥
ମୌସ୍ତ୍ରବ କାର୍ତ୍ତିକ ବେଳେଣ । ପୁଷ୍ପ ସେବା ଯେ ଏ ରୂପେଣ ॥
ଏ ଭେଦ ନ ଜାଣିଲେ ପୁଣ । ପୁଷ୍ପ ଦିଅନ୍ତି ରାହାସେଣ ॥
ପୁଷ୍ପ ଭକତ ନ ଜାଣନ୍ତି । ଯେସନେ ବନ୍ଧ୍ୟା ଯେ ଯୁବତୀ ॥
ମୁକୁନ୍ଦ ଅନନ୍ତ ଯାଦବ । ଏ କଥା ଦୃଢ଼ କରି ଭାବ ॥
ରାହାସ ଦାସ ବାରହିଆ । ଗୋପାଳ କୁଳ ମୋକ୍ଷ ହୁଆ ॥
ଧନ ପଣକୁ ଏଡ଼ି ଦେଲେ । ସ୍ତ୍ରିୟ ପୁତ୍ରକୁ ମୁରୁଛିଲେ ॥
ବାର ବରଷ ଦିଗମ୍ବର । ଅଙ୍ଗର ପାପ କଲ ଦୂର ॥
ଶ୍ରୀଗୁରୁ ପରମ ଯେ ଗୁରୁ । ପଚ୍ଛାରି ଶୁଣିଲ ମୁଖରୁ ॥
ବାର ବରଷ ଘରେ ଥିଲ । ବାର ବରଷ ତୀର୍ଥ କଲ ॥
ବାର ବରଷ ଗୁରୁ ସେବା । ତୁମ୍ଭଙ୍କୁ କି ଉପମା ଦେବା ॥
ପାଇଲ ଶ୍ରୀକୃଷ୍ଣ ଭଣ୍ଡାର । ନିର୍ଗୁଣ ସଗୁଣ ବିଗ୍ଭର ॥
ହରି ବଣିକେ କଲ ଆଶ । ମାୟା ବଣିଜ କଲ ନାଶ ॥
ହରେ ରାମକୃଷ୍ଣ ଯେ ଷଡ଼ । ରସ ମନ୍ତ୍ରର କଲ ଦୃଢ଼ ॥
ନିର୍ଗୁଣ ମନ୍ତ୍ର ଗୁପତେଣ । ଅଣଅକ୍ଷର ଯେ ଗୁଣିଣ ॥
ପ୍ରାଣିକି ଶୁଣାଇ ଶୁଣିଲ । ଚୌଦଶା ଚୌପଦୀ ରଚିଲ ॥
ଶାଖୀ ସୁମୂର୍ତ୍ତି ଯେ କାହାଣୀ । ଝିଗ ଝିମାଳୀ ରାଗ ପୁଣି ॥
ବଣିଆ ପଟୋଳିର ମତ । ହରି ଚରଣେ ଦେଇ ଚିତ୍ତ ॥
କଲି ଭଜନ ସନ୍ତୋଷେଣ । ହରି ପଯରି କରି ପଣ ॥

ଗୁରୁଙ୍କ ମହିମା ରଚିଲି । ମାତା ପିତାଙ୍କୁ ହସ୍ତାଇଲି ।।
ଗୁରୁଙ୍କ ଧର୍ମ ଯେ ରଖଇ । ସୁପୁତ୍ର ତାହାଙ୍କୁ ଯେ କହି ।।
ମାତା ପିତାର ଧର୍ମ ରଖି । ସୁପୁତ୍ର ବୋଲି ତାକୁ ଲେଖି ।।
ଏ ଧର୍ମ ଯେ ପୁତ୍ର ନ କରେ । ଚୌରାଶୀ ଯୋନି ଦେହି ଧରେ ।।
କଳିରେ କୁପୁତ୍ର ବହୁତ । ଗୁରୁ ନ ସେବ ଦୃଢ଼ ଚିତ୍ତ ।।
କଳିରେ ମହା ପାପୀ ପୋଏ । ମାତା ପିତାଙ୍କୁ ଏଡ଼ି ରହେ ।।
ବର୍ଣ୍ଣି ଶଙ୍କର ପୁତ୍ର ଏହି । ଏ ପୁତ୍ରେ ପ୍ରୟୋଜନ ନାହିଁ ।।
ତୁମ୍ଭେ ଚବିଶ ପୁତ୍ରେ ମୋର । ସୁପୁତ୍ର ସୁବୁଦ୍ଧି ସୁନର ।।
ଭକତ ହେଉ ତୁମ୍ଭ ଦେହି । ଅଚ୍ୟୁତ ଅଂଶେ ମିଶି ରହି ।।
ଧ୍ୟାନ ଅଚ୍ୟୁତ କଥା ସାର । ଚବିଶ ପୋଏ ମନେ ଧର ।।

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ଅଷ୍ଟ ପ୍ରହର
ପୁଷ୍ପସେବା କଥନେ ରାହାସ ଲୀଳା ବର୍ଣ୍ଣନ
ନାମ ପଞ୍ଚବିଂଶ ପଟଳ ।

—:o:—

## ଷଡ଼୍‌ବିଂଶ ପଟଳ

ଅନନ୍ତ ମୁକୁନ୍ଦ ଗୋପାଳ । କହିବା ବନର ଯେ ସ୍ଥଳ ।।
ବନମାନଙ୍କ କଥା ରସ । ଫେଡ଼ିଲେ ଫିଟିବ ସନ୍ଦେଶ ।।
କହିବା ହେତୁ ମନେ ଧର । ଦ୍ୱାଦଶ ବନର ବିସ୍ତର ।।
ତାଳ ବନ ଯେ ଏକ ହୋଇ । କାଦମ୍ବରୀ ଯେ ବନ ଦୁଇ ।।
ବକୁଳ ବନ କୁଞ୍ଜ ବନ । କଣ୍ଠ୍ୟ ବନ ବୃନ୍ଦାବନ ।।
ରହସ୍ୟ ବନ ହେମ ବନ । ବସନ୍ତ ବନ ସଉବନ ।।
ସଦା ଆନନ୍ଦ ବନ କହି । କିଶୋର କିଶୋରୀ ବନହିଁ ।।
ଦ୍ୱାଦଶ ବନ ଏ ରୂପରେ । ବିହାର ଶ୍ରୀ ବୃନ୍ଦାବନରେ ।।

ଯାଦବ ନୀଳବନେ ରହି । ଦ୍ୱାଦଶ ସହ୍ର ଗୋପ ତହିଁ ॥
କଦମ୍ବ ବନେ ସଙ୍କର୍ଷଣ । ଦ୍ୱାଦଶ ସହ୍ର ଗୋପଗଣ ॥
ଦାମ ଯେ ବକୁଳ ବନରେ । ଦ୍ୱାଦଶ ସଖା ବୃନ୍ଦ ତାରେ ॥
ସୁଦାମ କୁଞ୍ଜବନେ ରହି । ବାର ସହ୍ର ଗୋପାଳ ତହିଁ ॥
ଷାଠିଏ ସହସ୍ର ଯୋଗାରୂଢ଼ । ଅନନ୍ତ ହରିମନ୍ତ୍ର ଦୃଢ଼ ॥
ଶ୍ରୀବତ୍ସ ବୃନ୍ଦାବନେ ରହେ । ଦ୍ୱାଦଶ ସହ୍ର ଗୋପ ପୋଏ ॥
ବସନ୍ତ ବନେ ସଉନନ୍ଦ । ଦ୍ୱାଦଶ ସହ୍ର ଗୋପ ବୃନ୍ଦ । ୧୫ ।
ଶ୍ରୀକୃଷ୍ଣ ମନ୍ତ୍ର ଜପ କରି । ସେ ବନେ ସୁଖେଣ ବିହରି ॥
ଗୋବିନ୍ଦାଖ୍ୟ ଯେ ମନ୍ତ୍ର ଗୁଣି । ବତ୍ସ ଚରାନ୍ତି ବନେ ପୁଣି ॥
ଯାଦବ ସଖା ମନ୍ତ୍ର ଏହି । ଭାଗବତ ମୁଖରେ ଗାଇ ॥
କଦମ୍ବ ବନେ ସଙ୍କର୍ଷଣ । କୃଷ୍ଣାଖ୍ୟ ମନ୍ତ୍ର ସେ ଭଜନ ॥
ବକୁଳ ବନେ ଦାମ ରହି । ହରେ ଯେ ମନ୍ତ୍ର ଜପୁ ତହିଁ । ୨୦ ।
କୁଞ୍ଜବନେ ସୁଦାମା ରହି । ଅନନ୍ତ ହରି ମନ୍ତ୍ର ଧ୍ୟାୟି ॥
ଅନନ୍ତ ଶବଦ ଯେ ରାମ । ହରି ଶବଦ କୃଷ୍ଣ ଶ୍ୟାମ ॥
ଏଣୁ ଏ ରାମ କୃଷ୍ଣ ନାମ । କ୍ଷଣେ ନ ଛାଡ଼ନ୍ତି ସୁଦାମ ॥
ଗାଈ ଚରାଉଥାନ୍ତି ବନେ । ହଂସ ଶବଦ ଧରେ ମନେ ॥
ରାଆ ଶବଦ ଏଡ଼ାଳରେ । ମଥ ରହଇ ଗୁପତରେ ॥
ରାମକୃଷ୍ଣ ଯେ ସଖାଗଣ । ଜପନ୍ତି ରାମକୃଷ୍ଣ ପୁଣ ॥
ରାଆରେ ରାମ ଯେ ଗୁପତ । ଆବରି ଡକାନ୍ତି ବସନ୍ତ ॥
ଶ୍ରୀରାମ ବୃନ୍ଦାବନ ଲୀଳା । ବାର ସହସ୍ର ଗୋପ ଖେଳା ॥
ଗୋପୀଜନ ବଲ୍ଲଭାଖ୍ୟ ଗୁଣି । ବୃନ୍ଦାବନରେ ରହେ ପୁଣି ॥
ବସନ୍ତ ବନେ ସଉନନ୍ଦ । ମନ୍ତ୍ର ସେ ଜପଇ ଗୋବିନ୍ଦ ॥

---

୧୫—ଖ—

ଉଦ୍ଧବ କଣ୍ଠପୁ ବନରେ । ଜପ କରନ୍ତି ନିରନ୍ତରେ ॥
ରହସ୍ୟ ବନରେ ଅକ୍ରୂର । କୃଷ୍ଣ ହରେ ଜପି ମନ୍ତ୍ରର ॥
ସାତ୍ୟକି ହେମ ବନେ ରହି । ହରେ ଯେ ନାମ ଜପେ ତହିଁ ॥

ବୃନ୍ଦାବନ ଯେ ଉପବନେ । ହରେ ଯେ ମନ୍ତ୍ର ଗୁଣି ମନେ ॥
କଣୋରା ବନେ ରାଧାକୃଷ୍ଣ । ରାଧା ମନ୍ତ୍ର ଜପି ଅଭୀଷ୍ଟ ॥
ଉଦ୍ଧବ କଣସ୍ଥ ବନରେ । ଦ୍ୱାଦଶ ସଘ ସଙ୍ଗତରେ ॥
ରହସ୍ୟ ବନରେ ଅକ୍ରୁର । ଦ୍ୱାଦଶ ସହସ୍ର ସଙ୍ଗର ॥
ସାତ୍ତ୍ୱିକ ହେମ ବନେ ରହେ । ଦ୍ୱାଦଶ ସଘ ଗୋପ ପୋଏ ॥
ରାଧିକା କୃଷ୍ଣ ନାମ ଜପେ । ଅପେ ଆପଣା ନାମ ସ୍ଥାପେ ॥
କ୍ଲୀଁ ବୀଜ ଯେ ରାଧା ଧରେ । ଶ୍ରୀଁ ବୀଜ ଯେ ରାଧା ସ୍ମରେ ।
ଗୋପୀ ଗୋବିନ୍ଦ ଯେ ଧରଇ । କେ ଜନ ବଲ୍ଲଭାସ୍ୟ କହି ॥
କ୍ଲୀଁ କୃଷ୍ଣାୟ କେବା ଧରେ । କେ ହରେକୃଷ୍ଣ ନାମ ସ୍ମରେ ॥
ରାଧା ମନ୍ତ୍ର ବା କୃଷ୍ଣ ମନ୍ତ୍ର । ଆବର ଗୋପାଳର ମନ୍ତ୍ର । ୪୦ ।
ହରେ କୃଷ୍ଣ ଯେ ମନ୍ତ୍ର ଧରି । ଗୋପାଳ ବନରେ ବିହରି ॥
ଦ୍ୱାଦଶ ବନର ବିଗ୍ରହ । ବାରଟିଆ ଯେ ମନେ ଧର ॥
ଦ୍ୱାଦଶ ବନ ଧ୍ୟାନ କରି । ଦ୍ୱାଦଶ ଗୋପାଳ ସୁମରି ॥
ରହାସ ରସରେ ମିଶିବ । ସାଖା ସଖୀ ଯେ ହୋଇବ ଭାବ ॥
ପୁରୁଷ ଅଙ୍ଗ ପାଲଟଇ । ସ୍ତ୍ରୀ ଅଙ୍ଗରେ ସେବା ଧାଇ ॥
ରାଧିକା ମନ୍ତ୍ର ଜପ କରି । ଶ୍ରୀ ବୃନ୍ଦାବନକୁ ସୁମରି ॥
ତେବେ ରହାସ ରସେ ମିଶେ । ଅଚ୍ୟୁତ କହିଲେ ହରଷେ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଚତୁର୍ଥ ଖଣ୍ଡେ ସଖୀଗଣ ବନର
ନିୟମ ଉଚ୍ଚାରଣେ ନାମ ଷଡ଼୍‌ବିଂଶ ପଟଳ ।

—:O:—

## ସପ୍ତବିଂଶ ପଟଳ

ଅନନ୍ତ ମୁକୁନ୍ଦ ଗୋବିନ୍ଦ । ଗୁରୁ ଗୋବିନ୍ଦ ଫେଡ଼ ଧନ୍ଦ ॥
କଦମ୍ବ ବନ ଧ୍ୟାନ କରି । ଏମନ୍ତ ହୃଦରେ ସୁମରି ॥
କ୍ଲୀଁ କୃଷ୍ଣାୟ ଯେ ନମଃ । ଏ ମନ୍ତ୍ର ଗୁଣିବ ଉତ୍ତମ ॥
ତାଳ ବନକୁ ଧ୍ୟାନ କରି । ଏମନ୍ତ ମନ୍ତ୍ରକୁ ସୁମରି ॥

କ୍ଲୀଁ କୃଷ୍ଣାୟ ରାମ ହରେ । ସୁଦାମ ସ୍ମରେ ସେ ଅନ୍ତରେ । ୫ ।
ବକୁଳ ବନ ଲକ୍ଷ୍ୟ କଲେ । ଏ ମନ୍ତ୍ର ଜପିବ ସେ ଭଲେ ॥
ହ୍ରୀଁ କୃଷ୍ଣାୟ ଯେ ନମଃ । ଏ ମନ୍ତ୍ର ଜପିବ ଉତ୍ତମ ॥
କୁଞ୍ଜ ବନକୁ ସୁମରିଲେ । ଏ ମନ୍ତ୍ର ଜପିବ ଯେ ଭଲେ ॥
ଓଁ କୃଷ୍ଣ ପରମାନନ୍ଦ । ନମାମ୍ୟହଂ ଯେ ଆନନ୍ଦ ॥
ବୃନ୍ଦାବନକୁ ଧ୍ୟାନ କରି । ମନ୍ତ୍ର ସୁମରି ହୃଦେ ଧରି । ୧୦ ।
ଓଁ କ୍ଲୀଁ ମାଧବାୟ । ଉଦ୍ଧବ କୃଷ୍ଣ ନମାମ୍ୟହମ୍ ॥
କଣ୍ଠସ୍ଥ ବନ ସୁମରିବ । ଯତନେ ଏ ମନ୍ତ୍ର ଭଜିବ ॥
କ୍ଲୀଁ କୃଷ୍ଣ ଯେ ଗୋବିନ୍ଦ । ରାମ ହରେ ଯେ ହୃଦେ ବନ୍ଦ ॥
ରହସ୍ୟ ବନ ଧ୍ୟାନ କର । ଏ ମନ୍ତ୍ର ହୃଦରେ ସୁମର ॥
ହଉଁ ଯେ ହେଜ କଳ୍ପତରୁ । ସାଧୁଙ୍କ ନମ ଭକ୍ତେ କରୁ । ୧୫ ।
ହେମ ବନକୁ କର ଧ୍ୟାନ । ଏ ମନ୍ତ୍ର ଜପିବ ଯତନ ॥
ଓଁ ଯେ କ୍ଲୀଁ ଯେ କୃଷ୍ଣ । ମାଧବ ହରି ଏକ୍ତୁ ଶ୍ରେଷ୍ଠ ॥
ବସନ୍ତ ବନର ବିସ୍ତର । ଧ୍ୟାନ ପଥରେ ଲକ୍ଷ୍ୟ କର ॥
ଓଁ କ୍ଲୀଁ ରାମ ରାମ । ମାଧବ ତୋରେ ନମୋ ନମ ॥
ସଉ ବନକୁ ସୁମରଣ । ଜପ ଏମନ୍ତେ ହୃଦେ ଘେନ । ୨୦ ।
କ୍ଲୀଁ କୃଷ୍ଣ ହେ ଗୋବିନ୍ଦ । ଏ ମନ୍ତ୍ର ଜପିଣ ଆନନ୍ଦ ॥
ସଦା ଆନନ୍ଦ ମନେ ଧ୍ୟାନ । ଏ ମନ୍ତ୍ର ଜପିବ ଯତନ ॥
ଓଁ କ୍ଲୀଁ ହେ ଗୋବିନ୍ଦ । ହରେ ହରେ ପରମାନନ୍ଦ ॥
କିଶୋର ବନର ଭଜନ । ହୃଦରେ ଗୁଣିବ ମନେଣ ॥
ଓଁ କୃଷ୍ଣ ଯେ ରାଧେ କୃଷ୍ଣ । ରାଧା ଶ୍ୟାମ ଯେ କୃଷ୍ଣ କୃଷ୍ଣ ॥
କଦମ୍ବ ବନେ ଦାମ ରହେ । ସୁଦାମ ନୀଳବନେ ଥାଏ ॥
ଶ୍ରୀବତ୍ସ ବକୁଳ ବନରେ । ସ୍ତୋକ କୃଷ୍ଣ କୁଞ୍ଜବନରେ ॥
ଉଦ୍ଧବ ଶ୍ରୀ ବୃନ୍ଦାବନରେ । ସାତ୍ୱିକୀ ରହସ୍ୟ ବନରେ । ୩୦ ।
ବସନ୍ତ ବନେ ବୃନ୍ଦା ନନ୍ଦ । ସୌବନେ ଆନନ୍ଦ ଯେ ନନ୍ଦ ॥
ସୁବାହୁ ସଦା ଆନନ୍ଦରେ । ସଦା ଆନନ୍ଦ ସେ ବନରେ ॥

କଶୋଖ ବନେ ରାଧା କୃଷ୍ଣ । ଏମନ୍ତ ବନରେ ଯେ ଭେଟ ॥
ଶ୍ରୀ ବୃନ୍ଦାବନ ଧ୍ୟାନ କରି । ଶାଖା ଭଗତ ହୃଦେ ଧରି ॥
କଦମ୍ବ ବନେ କର ଆଶ । ନନ୍ଦ ଆନନ୍ଦ ଧ୍ୟାନେ ଘୋଷ ॥
ଅନନ୍ତ ମୁକୁନ୍ଦ ଯେ ଦୁଇ । ମାଳ ବନକୁ ଧ୍ୟାନ ରହ ॥
ବକୁଳ ବନକୁ ସୁମର । ଯାଦବ ବସ୍ତ୍ର ମନେ ଧର । ୩୭ ।
କୁଞ୍ଜ ବନକୁ ସୁମରିବ । ରାମ ପବନ ଯେ ଧରିବ ॥
ଶ୍ରୀବୃନ୍ଦାବନ ଲକ୍ଷ୍ୟ କର । ଗୋବିନ୍ଦ ଭରଥ ସୁମର ॥
କଣ୍ଠ ବନ ଲକ୍ଷ୍ୟ କରି । ଧର୍ମ୍ମ ମଥୁରା ମନେ ଧରି ॥
ରହସ୍ୟ ବନରେ ଭଜନ । ବିଷ୍ଣୁ ଉତ୍ଥାନ ଦିଅ ମନ ॥
ସଖ୍ୟ ବନରେ କର ସେବା । ଦକ୍ଷିଣ ବାଳକ ସର୍ବଦା ॥
ବସନ୍ତ ବନ କର ଲକ୍ଷ୍ୟ । ନିରଞ୍ଜନ ଯେ ବୃନ୍ଦା ଧ୍ୟାକ୍ଷ୍ୟ ॥
ସଖ୍ୟ ବନରେ କର ସେବା । ଗୋବିନ୍ଦ ବନ୍ଧ ଯେ ଧ୍ୟାଇବା ॥
ସଦା ଆନନ୍ଦ ବନେ ବାସ । ମଧୁ ଲେହ୍ୟ ଯେ କର ଆଶ ॥
କଶୋଖ ବନେ ସର୍ବେ ସେବା । ଚବିଶ ଗୋପାଳ ମିଳିବା ॥
ରାଧା କୃଷ୍ଣ ଯେ ନିତ୍ୟ ଜାଣି । ରସ ରସ କଥା ଅଗ୍ରଣୀ । ୪୫ ।
ରାବ ଦଳସେ ସେବା ମାନ । ଧ୍ୟାଇଣ କରିବେ ଭଜନ ॥
ସତ୍ୟରେ ଋଷିଗଣ ହେଲ । ଭଗବାନରେ ବିହରିଲ ॥
ତ୍ରେତାରେ ବାନର ହୋଇଣ । ଭ୍ରମିଲ ଶ୍ରୀରାମ ସଙ୍ଗେଣ ॥
ଦ୍ୱାପରେ ଶ୍ରୀକୃଷ୍ଣ ସଙ୍ଗରେ । ବିହାର ଶ୍ରୀବୃନ୍ଦାବନରେ ॥
କଳିରେ ନଦିଆ ନଗରେ । ଜନମ ହେଲ ଗଙ୍ଗା ତୀରେ ॥
ଉତ୍କଳେ ବିରଜା ଦେଶରେ । ଜନମ ଶଙ୍କର ବିଷରେ ॥
ପୁଣ ବନ୍ଦର ଅର୍କ ସ୍ଥଳ । କଳଙ୍କି ସଙ୍ଗେ ହୋଇ ମେଳ ॥
ଘୃଣ ଯେ ଲକ୍ଷ ଭୋଗ ହେବ । ମୃତ୍ୟୁ ଯେ ପୁଣ ନ ଲଭିବ ॥
ବରଣ ସସ ପାପେ ଯିବ । ବଉଦ ରୂପ ଗୋପ୍ୟ ହେବ ॥
କଳଙ୍କି ହୋଇବେ ଆପଣ । ଥିବେ ସଙ୍ଗତେ ବାରଜଣ ॥
ଆବର ବାରଜଣେ ପୁଣି । ଲୀଳା କରିବେ ସଙ୍ଗେ ଘେନି ॥
ସତ୍ୟ କଳି ଯେ ପ୍ରକାଶିବ । ପୃଥିବୀ ଭକ୍ତ ବୃନ୍ଦ ହେବ ॥

ସୁବର୍ଣ୍ଣ ଗୃହରେ ରହିବ । ଛଣକୁଆ ଘର ନୋହିବ ॥
କର ନ ନେବ ରଜା ପୁଣ । ଉଦର ମାଫିକେ ଚଷିଣ ॥
ଶୂଦ୍ରଙ୍କ କର୍ମ ସବ ଯିବ । ଯେ ଯାହା ବୃତ୍ତି ସେ କରିବ ॥
ବହୁତ ଦୁଧ ଗାଇ ଦେବେ । ଗୋପାଳେ ଦୁଃଖରୁ ବଞ୍ଚିବେ ॥
ସ୍ୱେ ଧେନ କଳିରେ ଗୁପତ । ଗୋପାଳେ ନୋହିବେ ଉଦ୍ଧତ ॥
ଗଉଡ଼ ଜାତି ବୋଲାଇବେ । କଳିରେ କଷ୍ଟରେ ବଞ୍ଚିବେ ॥
କଳଙ୍କି ଗୋପାଳଙ୍କୁ ଧେନ । ଭୁଞ୍ଜିବୁ ଘୃତଦୁଧ ପୁଣି ॥
ଗୋପାଳ ପ୍ରାୟେ ଗୋପାଳରେ । ବିହାର କରିବେ ଓଡ଼ରେ ॥
ଛେନା ଲବଣୀ ଦୁଧସର । ଅଧାମ ଗୋଷ୍ଟିକା ସାକର ॥
ଗୋପାଳ ସଙ୍ଗରେ ଭୁଞ୍ଜିବୁ । କାଳିଆ ଘୋଡ଼ାରେ ଚଢ଼ିବୁ ॥
ଅନନ୍ତ କେଶରୀ ରାଜନ । ଧଳା ଘୋଡ଼ା ସେ କରି ଯାନ ॥
ଚାରି ବର୍ଣ୍ଣର ଲୋକ ଯେତେ । ଅଠର ପାଟକ ସହିତେ ॥
ସମସ୍ତେ ଏକଠାରେ ମିଳି । ସଂସାରେ ନ ଥିବ ଯେ କଳି ॥

ସ୍ତ୍ରୀ ପୁରୁଷମାନେ ପୁଣ । କରିବେ ସମାଧି ଧାରଣ । ୭୦ ।
ସଗୁଣ ରୂପ ସଙ୍ଗେ ଥିବେ । ନିର୍ଗୁଣ ରୂପକୁ ଧ୍ୟାଇବେ ॥
କଟକ ବସିବ ଯେ ପୁଣ । ଅର୍କ ବଟର ସନ୍ନିଧେଣ ॥
ହରିଣୀପୁର କୁଜଙ୍ଗରେ । ରଇଁତୋ ଯାଜ ଏ ନଗରେ ॥
ଏତେ ଲମ୍ବରେ ଯେ କଟକ । ଭଲ ଦଉଡ଼ ଅଶ୍ୱ ଏକ ॥
ଯାଜ ନଗରୁ ଛଡଅନା । କଟକ ଠାରୁ ହଟକନା ॥
ଏଥିରେ ବର୍ଷବ ନବର । ଦାଣ୍ଡ ରହିବ ନଅଁଳର ॥
ପାରଦ୍ୱୀପରୁ ବାଙ୍କି ଯାଏ । ଚୂଳବା ଦାଣ୍ଡ ସେ ଗୋଟାଏ ॥
କହିବ୍ ପାର ଏକ ଖଣ୍ଡ । ଘୋଡ଼ାଙ୍କୁ ଉତ୍ତମ ଏ ଦାଣ୍ଡ ॥
ସକଳ ଥାନ ଭାଙ୍ଗିଯିବ । ଏ ଥାନେ କଟକ ବସିବ ॥
କଳି ଚରିତ କଥାମାନ । ଆଗକୁ ଗଣିବେ ସୁଜନ । ୮୦ ।
କଳିରେ ଯେତେ ଜନ ଥିଲେ । ଅଜ୍ଞାନେ ଦିନ ସେ ବଞ୍ଚିଲେ ॥
ସକଳ ଶାସ୍ତ୍ର ବୁଝିଥିଲେ । ଅମେଧ ଦ୍ରବ୍ୟହିଁ ଭକ୍ଷିଲେ ॥

ମନ୍ତ୍ର ମାଉଁସ ପର ଦାର । ପ୍ରାଣୀଏ ଏ ହେତୁରୁ ମାର ॥
ଏଣୁ ଅଲପ ଧନେ ନାଶ । ନିର୍ଗୁଣ ନ ସାଧିଲେ ଲେଶ ॥
ନିର୍ଗୁଣ ଯେ ଜନ ସାଧଇ । ଅଲପ ଧନେ ନ ମରଇ ॥
ଘୋର କଳିରେ ପ୍ରାଣୀ ମତ । ଏଣୁ ଅଲପ ଧନେ ହତ ॥
ଏଣୁ ନିର୍ଗୁଣ ଲକ୍ଷ୍ୟେ କର । ଅଚ୍ୟୁତ ବାକ୍ୟ ଶିରେ ଧର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ବନ ଦର୍ଶନ
ମନ୍ତ୍ରଭେଦ କଥନେ କଳି ଆଗମ ଚରିତେ
ନାମ ସପ୍ତବିଂଶ ପଟଳ ।

—:O:—

## ଅଷ୍ଟାବିଂଶ ପଟଳ

ମୁକୁନ୍ଦ ଅନନ୍ତ ସୁମର । ବାର ଗୋପାଳ ସଙ୍ଗ କର ॥
ଶ୍ରୀ ବୃନ୍ଦାବନକୁ ଧାଇବ । କୀର୍ତ୍ତନେ ମନ ଦେଇଥିବ ॥
ରହାସେ ସେବ ଯେ ତୁମ୍ଭଙ୍କୁ । ସପ୍ତ ପୁରୁଷ ଉଦ୍ଧାରକୁ ॥
ଯେତୁ ସେ ରହାସ ସେବିବ । ସେ ବୃନ୍ଦାବନକୁ ପାଇବ ॥
ରାମ ଭରଥ ତୁମ୍ଭେ ବୁଝ । ବାର ଗୋପାଳ ଏଥି ମଜ୍ଜ ॥
କିରୂପେ ତୁମ୍ଭଙ୍କୁ ଧାଇବେ । ଏ ଭେଦ ଆଜ୍ଞା ହେଉ ଏବେ ॥
ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ । ତୁମ୍ଭ ସେବାରେ ନିମଜ୍ଜିତ ॥
ମୁଁ କାହିଁ ତୁମ୍ଭଙ୍କୁ ପାଇବି । ଭୃତ୍ୟ ପଣରେ ଦିନ ନେବି ॥
ମୁକୁନ୍ଦ ଅନନ୍ତ ହେ ଜାଣ । ତାରିଲ ସକଳ ଯେ ଜନ ॥
ଗୋପାଳ କୁଳ ଉଦ୍ଧାରଣ । ଧନ୍ୟ ସେ ତୁମ୍ଭ ପ୍ରୀତି ପୁଣ ॥
ଟଙ୍କା କଉଡ଼ି ଘେନି ବୁଲ । ଯାହା ମାଗିଲ ତାହା ଦେଲ ॥
ଛତିଶ ପାଟକକୁ ଆଣି । ଦେଲ ଯେ ଆମ୍ଭଙ୍କୁ ସେ ପୁଣି ॥
ସଭାରେ ଭିକ୍ଷା ଯେ ମାଗିଲ । ଆମ୍ଭଙ୍କୁ କିରୂପେ ସେ ଦେଲ ॥
ଆମ୍ଭେ ତୁମ୍ଭର କି କରିବୁ । କିରୂପେ ସେବାରେ ଥିବୁ ॥

ତୁମ୍ଭେ ଆମ୍ଭର ଗୁରୁ ଅଟ । ଭିକ୍ଷା ମାଗିଣ ପାଦେ ଖଟ ॥
ତୁମ୍ଭ ଅଂଶରେ ଯେତେ ଥିବେ । ଜନ୍ମେ ଜନ୍ମେ କୃଷ୍ଣ ସେବିବେ ॥
ତୁମ୍ଭ ଅଂଶରେ ଅଂଶ ପୁଣ । ନାମ ଗାଇବେ ଯାହା ଦିନ ॥
ମୃଦଂଗ ତାଳ ଯେ ଧେନିବେ । ଶ୍ରୀ ବୃନ୍ଦାବନକୁ ଗମିବେ ॥
ଦ୍ୱାଦଶ ଗୋପାଳ ନ ସୁରେ । କାମଲ କୃଷ୍ଣ ତା ଶରୀରେ ॥
ମଣି ମୁକୁନ୍ଦ ଅନନ୍ତକୁ । ଅଚ୍ୟୁତ କୃପା ଯେ ତାହାକୁ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ରାହାସ
ନିର୍ଣ୍ଣୟ ବର୍ଣ୍ଣନେ ଭେଦ କଥନେ
ନାମ ଅଷ୍ଟାବିଂଶ ପଟଳ ।

---

## ଊନତ୍ରିଂଶ ପଟଳ

ମୁକୁନ୍ଦ ଅନନ୍ତ ସୁଦାମ । ଆଜ୍ଞା ଯେ ଦିଅ ଗୁରୁବ୍ରହ୍ମ ॥
ନାମ କୃଷ୍ଣ ଯେ କରୁପେଣ । କରିବୁଁ ଆମ୍ଭେ ସୁମରଣ ॥
ଗୁରୁ ବଚନ ଶିଷ୍ୟେ ଶୁଣ । କହିବା ଏଥି ରୂପ ଗୁଣ ॥
ଅର୍ଦ୍ଧମାତ୍ରାର ତଳେ ବସେ । ଅକାର ମୂର୍ତ୍ତି ଯେ ପ୍ରକାଶେ ॥
ଆଦ ଅକ୍ଷର କୃଷ୍ଣ ବର୍ଣ୍ଣ । ନଅ ଦିକଳା ପାଦେ ଚିହ୍ନ ॥
ଉପର ଶିର ହସ୍ତ ହୋଇ । ନୟନ ନାସା ମୁଖ ସେହି ॥
ପ୍ରାନ୍ତର ନଅ ପାଦ ଶୋଭି । ଉପର ନଅ ହୃଦେ ଆଭି ॥
ଭୁଜ ଯେ ଅଟେ ଶୁଭ୍ର ସେହି । ଭୁଜ ନୟନ ନାସା ଏହି ॥
ନମ ରାଧା ଯେ ଛନ୍ତି ତହିଁ । ଶୁଣିଲୁ-ଟିକ ହୋ ତନଯି ॥
ଅକାର ପ୍ରାନ୍ତ ବିଷ୍ଣୁ ଜାଣ । ଉକାର ବ୍ରହ୍ମ ପରମାଣ । ୧୦ ।
ମକାର ମହେଶଟି ବହି । ଏମନ୍ତ ତିନ ରୂପ ତହିଁ ॥
ମକାର ଅଟଇ ଅନନ୍ତ । ସିଂହାସନ ଅଟଇ ସେ ତ ॥
ମକାର ଅଟେ ସୁଦର୍ଶନ । ଏମନ୍ତେ ତିନ ରୂପ ଚିହ୍ନ ॥

ଅକାର ପ୍ରାନ୍ତ ଜଗନ୍ନାଥ । ଉକାରେ ସୁଭଦ୍ରା ସଂଯୁକ୍ତ ॥
ଏ ଗର୍ଭେ ନଅ ନିଜରୂପ । ଅଛନ୍ତି ଗୁପତେ ସେହି ତ ॥
ଏ ରାଧାକୃଷ୍ଣ ଯେ ଉତ୍ତମ । ନାମ ଯେ ଶ୍ରୀ ପୁରୁଷୋତ୍ତମ ॥
ଏକାରେ କୃଷ୍ଣ ବେଦାକ୍ଷର । ମକାରେ ହରେ ବେଦ ଧର ॥
ଉକାରେ ରାମ ବେଦ ବସେ । ଅଧରେ ଶ୍ୟାମ ପରକାଶେ ॥
ଏମନ୍ତେ ହରେ ରାମକୃଷ୍ଣ । ଶ୍ୟାମ ମିଶିଣ ଗୃଚ ଧାମ ॥
ହରେ ଯେ ବଳଭଦ୍ର ହୋଇ୍ଲେ । ରାମ ସୁଭଦ୍ରା ରୂପେ ଶୋହେ ॥
କୃଷ୍ଣ ଯେ ହୋଇ୍ଲେ ଜଗନ୍ନାଥ । ଶ୍ୟାମ ସୁଦର୍ଶନ ସମ୍ଭୂତ ॥
ହ୍ରୀଁ ବଳଭଦ୍ର କହି । ଶ୍ରୀଁ ଯେ ସୁଭଦ୍ରା ଅଟଇ ॥
କ୍ଲୀଁ ଅଟଇ ଜଗନ୍ନାଥ । ଦାମ ସୁଦର୍ଶନ ସମ୍ଭୂତ ॥
ନନ୍ଦ ଅନନ୍ତ ରୂପ ଶୋଭା । କନ୍ଦ ସୁଭଦ୍ରା ବେଦ ଆଭା ॥
ଦାନ ଅଟଇ ଜଗନ୍ନାଥ । ଧର୍ମ ବ୍ରହ୍ମ ଯେ ଏ ଚତୁର୍ଥ ॥
ସାଧୁ ଯେ କାମପାଳ କହି । ମଧୁ ସୁଭଦ୍ରା ରୂପ ହୋଇ ॥
କାମ ଯେ ଜଗନ୍ନାଥ ଜାଣ । ବ୍ରହ୍ମ ଯେ ସୁଦର୍ଶନ ପୁଣ ॥
ଏମନ୍ତେ ଗୁଣ ଗୁଣ ନାମ । ଏହି ଯେ ଅଟେ ହରେ ରାମ ॥
ହ୍ରୀଁ ଅକ୍ଷରୁ ହରେ ଜାତ । କ୍ଲୀଁ ଅକ୍ଷରୁ କୃଷ୍ଣ ଖ୍ୟାତ ॥
ଶ୍ରୀଁ ଅକ୍ଷରୁ ରାମ ହୁଏ । ଉଲଟେ ତିନି ନାମ କହେ ॥
ହରେ ରାମ ଯେ କୃଷ୍ଣ ତିନି । ସଂସାରେ କରନ୍ତି ଭ୍ରମଣି ॥
ପୁଣ ଯେ ଚୈତନ୍ୟ ଠାକୁର । ସେ ପୁଣ ମନ୍ତ୍ର କଲେ ଆର ॥
ଠାକୁରାଣୀ ଯେ ମନ୍ତ୍ର କରି । ଶ୍ରୀଁ ବୀଜରୁ ସେ ସଞ୍ଚରି ॥
ଶ୍ରୀଁ ରାଧିକାୟୈ ନମଃ । ମନ୍ତ୍ର ଉଆଇଲେ ଉତ୍ତମ ॥
କ୍ଲୀଁ ବୀଜୁଁ କୃଷ୍ଣ ନାମ । କ୍ଲୀଁ କୃଷ୍ଣାୟ ଯେ ନମଃ ।
ରାମଶ୍ୟାମ କୃଷ୍ଣରୁ କରି । ଶ୍ରୀ ରାଧା କୃଷ୍ଣ ମନ୍ତ୍ର ଧରି ॥
ରାଧେ ଶ୍ୟାମ ଯେ ରାଧେକୃଷ୍ଣ । ଶ୍ୟାମ ବେଦରୁ ଉତପନ୍ନ ॥
କୃଷ୍ଣ କୃଷ୍ଣ ଯେ ରାଧେ ହୋଇ । ଏମନ୍ତେ ମନ୍ତ୍ର ପ୍ରକାଶଇ ॥
ଜନ ବଲ୍ଲଭ ହ୍ରୀଁ ବୀଜେ । ଗୋପୀ ଶୀରେଷି ଯେ ବିରାଜେ ।

କ୍ଲୀଁ କୃଷ୍ଣାୟ ଯେ ନମ । ଗୋପାଳ ମନ୍ତ୍ର ଯେ ଉତ୍ତମ ॥
କାମ ଗାୟତ୍ରୀ ଯାହା କହି । ଆକାର ମାତ୍ରାରୁ କ୍ଷରଇ ॥
ବ୍ରହ୍ମ ଗାୟତ୍ରୀ ପୁଣ ଯେହ୍ନ । ଓଁକାର ଯନ୍ତ୍ରୁ ପ୍ରକାଶଇ ॥
ରୁଦ୍ର ଗାୟତ୍ରୀ ମକାରେଣ । ଅଧରେ ଛନ୍ଦ ବସେ ପୁଣ ॥
ଷିଇ ବସଇ ଅକାରରେ । ଧ୍ୱଜ ବସଇ ମକାରରେ ॥
ରଅ ଯେ ଓଁକାରେ ବସଇ । ମୁଣ୍ଡ ଯେ ଅର୍ଦ୍ଧ ମାତ୍ରା ହୋଇ ॥
ପଶ ଯେ ବସଇ ଷି ରେ । ର ଯେ ବସଇ ଧୀ ରେ ॥
ଶଶ ବସଇ ରକାରେଣ । ବଦ ଯେ ମୁଣ୍ଡ ରେ ଗୋପନ ॥
ଏ ହରେ ରାମ ମନ୍ତ୍ର ସାର । ସକଳ ମନ୍ତ୍ର ଏ ଗର୍ଭର ॥
ଅଣ ଅକ୍ଷର ଏକାକ୍ଷର । ତାରକ ରାମ ପଞ୍ଚାକ୍ଷର ॥
ହରେ ରାମ ମିଶିଣ ପାଞ୍ଚ । ଏ ପାଞ୍ଚ ମନ୍ତ୍ର ମୂଳ ସଞ୍ଚ ॥
ଅଣ ଅକ୍ଷର ମୂଳ ହୋଇ । ଏକ ଅକ୍ଷର ଅଙ୍କୁରଇ ॥
ତାରକ ଅଟଇ ଯେ ଡାଳ । ଶ୍ୟାମ ପଞ୍ଚାକ୍ଷର ଫୁଲ ॥
ହରେ ରାମ ଯେ ଫଳ ହୋଇ । ଆବର ରସ ମନ୍ତ୍ର ତହିଁ ॥
ବୃକ୍ଷର ମୂଳରେ ବସିବ । କ୍ରମେ ବୃକ୍ଷପରେ ଉଠିବ ॥
ଡାଳରେ ଉଠି ପୁଣ୍ୟ ବାସ । ଘୋଷ ସୁଜନେ ସାଧୁ ଅଂଶ ॥
ଡାଳେ ଉଠିଲେ ଫଳ ଖାଇ । ଫଳର ରସ ଯେ ଜାଣଇ ॥
ମୂଳ ନ ଚିହ୍ନି ଯେ ଉଦାସ । ଧାନରେ ଯେସନ୍ତି ଘାସ ॥
ଅଣ ଅକ୍ଷର ମନ୍ତ୍ର ଘୋଷ । ତେବେ ଜୀବର ପାପ ନାଶ ॥
ଏକା ଅକ୍ଷର ମନ୍ତ୍ର ଧାଇ । କଠୋର ପାପ ନାଶ ଯାଇ ॥
ତାରକ ରାମ ପଞ୍ଚାକ୍ଷର । ପ୍ରାରବ୍ଧ ପାପମାନ ହର ॥
ହରେ ରାମକୁ ଯେ ଜପିବ । ଫଳ ଯେ ପାପକୁ ଛେଦବ ॥
ଅଣଅକ୍ଷର ମନ୍ତ୍ର ଧରେ । କୋଟିଏ ଜନ୍ମ ପାପ ହରେ ॥
ଏକା ଅକ୍ଷର ଯେ ନାଶଇ । ତା ରୋଗ ବ୍ୟାଧି କ୍ଷୟ ଯାଇ ॥
ମଲେଣ କୃଷ୍ଣ ପୁରେ ରହେ । କୃଷ୍ଣ ସେବାରେ ଚଉ ଦଏ ॥
ତାରକ ରାମ ପଞ୍ଚାକ୍ଷର । ରାମାଦ ଭଜି ଭବୁଁ ପାର ॥
ଶୁଣ ହେ ବାରଟିଆ ଦାସ । ଗୁଡ଼ାଲ ଧନପଣ ଆଶ ॥

ତୁମ୍ଭର ବାର ଯେ ବରଷ । ଭକ୍ତରେ ବଳାଇଲ ଆଶ ॥
ବାର ବରଷ ଆମ୍ଭ ସେବା । ତାହା ତ ପୂରିଲ ସେବା ॥
ଏଣୁ ପାଇଲ ମନ୍ତ୍ର ସାର । ତେଜିଲ ଧନ ପୁତ୍ର ଦାର ॥
ବାର ବରଷ ଦେଶାନ୍ତର । ଭ୍ରମିଲ ତୀର୍ଥ ବ୍ରତ କରି ॥
ଏବେ ତୃତୀୟ ପରବେଶ । ଚତୁର୍ଥ କାଳ ଅଟେ ଦୃଶ୍ୟ ॥
ଓଡ଼ରାଷ୍ଟ୍ରରେ ସ୍ଥାନ ଧରି । ରହ ତୁମ୍ଭେ ଯେ ନୀଳଗିରି ॥
ଉତ୍ଥାନ ମଥୁରା ଯେ ଦୁଇ । ବାଙ୍କି ମୁହାଣେ ରହ ଯାଇ ॥
ଗୋବିନ୍ଦ,ବଂଶୀ ବେନି ଜନ । କୋଠ ଦେଶରେ କର ସ୍ଥାନ ॥
ସୁଦାମ ଆନନ୍ଦ ଯେ ଦୁଇ । ଖଣ୍ଡି ବଣରେ ରହ ଯାଇ ॥
ପବନ ବୃନ୍ଦାବନ ପୁଣ । କୋଦଣ୍ଡା ବଣେ କର ସ୍ଥାନ ॥
ମୁକୁନ୍ଦ ଅନନ୍ତ ବାଳକ । ବୃନ୍ଦାବନ ଯେ ଗୁରୁ ଲୋକ ॥
ଯାଦବ ଗୋପ ଯେନ ମନ । ଟଙ୍କାର ବଣେ କର ସ୍ଥାନ ॥
ପାଇକା ବଣେ ? କୁଜ ରହ । ଖଣ୍ଡିରେ ଭୁଥରଥ ଦେହ ॥
ଶାଇଲେ ବଣେ ଧର୍ମୁ ରହ । ସୁଆଙ୍ଗ ବଣେ ରାମ ଥାଅ ॥
ଝାଡ଼ ଖଣ୍ଡରେ ସୁନପୁର । ବିଷ୍ଣୁ ଯେ ରହ ସେହିଠାର ॥
ତୁମ୍ଭେ ପଞ୍ଚ ଗୋପ ସଂସାର । ଛଡ଼ ଗୋପାଳରେ ବହର ॥
ଖୋଲ କର୍ତ୍ତାଳ ନ ସାଧିଲ । ଦେଶାନ୍ତର ହୃତ ନ ଗଲ ॥
ମଳନ ହେବ ତୁମ୍ଭ ଅଂଶ । ତୁମ୍ଭ ଧ୍ୟାନରେ ନାହିଁ ଯଶ ॥
ତୁମ୍ଭେ ନରତେ ଭଣ୍ଡ ଖାଇ । ଯନ୍ତ୍ର ମନ୍ତ୍ରରେ ପଶ୍ୟ ନୋହି ॥
ଗୁରୁ ପୀଠ ଯେ ଜଡ଼େ ଯିବ । ପଞ୍ଚରେ ଏକ ଏକ ଥିବ ॥
ଯନ୍ତ୍ର ମନ୍ତ୍ରରେ ଶ୍ରଦ୍ଧା କରି । ଏକକୁ ଆରେକ ପଗୁରି ॥
ବାରଟିଆ ଯେ ଦାସ ଘର । ଘୋଷି ଉଜ୍ଜ୍ୱଳ କୀର୍ତ୍ତନର ॥
ମଳନ ଗୁରୁ ପୀଢ଼ଠାରେ । ଉଜ୍ଜ୍ୱଳ ଏକ ଏକ ନରେ ॥
ଛଡ଼ ଗୋପାଳ ବଇରାଗୀ । ସ୍ତ୍ରୀ ସଙ୍ଗତେ ନାହିଁ ଭୋଗୀ ॥
ବଇରାଗୀ ବା ନପୁଂସକ । ଏଥୁଁ କରୂପେ ହେବେ ଲୋକ ॥
ଉତ୍ଥାନ ପବନ ମଥୁରା । ବୃନ୍ଦାବନ ଯେ ମଧୁଧାରା ॥
ଆନନ୍ଦ ମିଶି ଷଡ଼ ନର । ଏଥି ନଥିବେ ଅଂଶ ଆର ॥

ଯାଦବ ବାଳକ ସୁଦାମ । ଅଂଶ ଅଳପସ୍ତବେ ରାମ ॥
ମୁକୁନ୍ଦ ଦାସର ଅଂଶରେ । କିଛି ଅଂଶ ବା ଏଥି ଧରେ ॥
ମଥୁରା ଅଂଶ ଚିରଞ୍ଜୀବ । ଗୋପ ଯେ କୂଳରେ ଦୁର୍ଲ୍ଲଭ ॥
ତୁମ୍ଭେ ଯେ ସ୍ଥାନମାନ କର । ଦାସ ପୁତ୍ର ହେବେ ତୁମ୍ଭର ॥
ଅଚ୍ୟୁତ ପଥ ଭିଆଇବ । ଗୋପ ବାଳକ ମିଶାଇବ ॥
ତୁମ୍ଭ ଅଂଶରେ ମିଶି ଅଂଶ । ଗୋପାଳ କୁଳେ ହେବେ ଦାସ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ଗୋପାଳ ମନ୍ତ୍ର
ମୂର୍ତ୍ତି କଥନେ ଶ୍ୟାମ ରାଧା କୃଷ୍ଣ ବର୍ଣ୍ଣନେ
ନାମ ଊନତ୍ରିଂଶ ପଟଳ ।



## ତ୍ରିଂଶ ପଟଳ

କହ ପରମ ଗୁରୁ ଦେବ । ଏ ଶିବ ପଞ୍ଚାକ୍ଷର ଭାବ ॥
ବିସର୍ଗ ବିସର୍ଗ ପର୍ଶ୍ୱର । ତୁମ୍ଭେ ବିବେକ ଅଟ ବାର ॥
ଆଉଁ ଆଦ୍ୟନ୍ତ ବେଦାକ୍ଷର । ଅଉଁ ଯେ ପାର୍ବତୀ ଶଙ୍କର । ୩ ।
ଅକାର ମିଶି ପଞ୍ଚକଳା । ପଞ୍ଚ ଅକ୍ଷର ଏଥୁଁ ହେଲା ॥

---

୩—ଖ, ଗ—

ଯକାର ପାଶେ ଷୋଳ ସ୍ୱର । ଆଠ ଅ.ଠ ଯେ ବିସର୍ଗର ॥
ଅକାର ମହେଶଶକ୍ତି ଜାଣ । ମୂକାର ଆଦ୍ୟ ଶକ୍ତି ପୁଣ ॥
ଅକାର ଅ.ଦ୍ୟ ନ' ପାଦ । ହସ୍ତ ଶିର ଉପର ଭେଦ ॥
ଅକାର ଆଦ୍ୟ ନଅ ଯେହ୍ନ । ଚରଣ ବୋଲି ତାହା କହ୍ନ ॥
ଉପର ଶିର ହସ୍ତ ଶୋଭା । ଈଶ୍ୱର ପାର୍ବତୀ ସେବିବା ॥

ଅଙ୍ଗରୁ ଆଉଁ ହେଲା ଜାତ । ନଅ ଏ ଅକାରୁ ସମ୍ଭୂତ ॥
ମ ଅକାରୁ ଜାତ ହୋଇ । ଶି ଯେ ଅକାର କ୍ଷରଇ ॥
ଓଁକାରୁ ବା ସଞ୍ଚରିଲା । ୟ ଅଇସ୍ବକୁ ଧଇଲା ॥
ଏମନ୍ତେ ଶିବ ପଞ୍ଚାକ୍ଷର । ଓଁ ନମ ଶିବାୟ ବସ୍ବର ॥
ଓଁ ଅଙ୍ଗ ଯେ ମିଶି ଷୋଳ । ଈଶ୍ୱର-ପାର୍ବତୀଙ୍କ ସ୍ଥଳ ॥
ଓଁକାର ଅକ୍ଷର ଗୁଣନ୍ତି । ଯୋଗ ସାଧୁ ଯେ ଜନ ମୂର୍ତ୍ତି ॥
ଧର୍ମ ଅର୍ଥ ଯେ କାମ ମୋକ୍ଷ । ଭଜିଲେ ହୁଅଇ ପ୍ରତ୍ୟକ୍ଷ ॥
ଦେବତା ଋଷିଗଣମାନେ । ଗନ୍ଧର୍ବ ଆଦି ଯେତେ ଜନେ ॥
ନର ଆଦି ଏ ସୁମରଣ । ଲଭିଲେ ଅର୍ଥ ଧନ ପୁଣ ॥୧୩॥
ପାର୍ବତୀ ବାମ ପାଶେ ବସେ । ଯୋଗ ଭକ୍ତି ମିଶାଇ ଘୋଷେ ॥
ଯେତେକ ଜୀବ ଜନ୍ତୁ ହୁଦେ । ବିଜୟେ କରେ ମାୟା ଛନ୍ଦେ ॥
ଏଣୁ କି ଜୀବଶିବ ଏକ । ପାଣି ପବନୁ ଜୀବ ଲୋକ ॥
ଏରୂପେ ମନ୍ତ୍ର ଯେ ସୁମରେ । ଦୟା କରଇ ଶିବ ତାରେ ॥
ନାମର ଭେଦ ଯେ ଜାଣଇ । ନାମ ରାଧାକୃଷ୍ଣ ସେ ପାଇ ॥
କଳିଯୁଗରେ ଶିବ ଜାତ । ନଦିଆ ସ୍ଥଳେ ଯେ ଅଦ୍ୱୈତ ॥
ତେଣୁ ସେ ଆଦିଗୁରୁ ହୁଏ । ଅଦ୍ୟ ମନ୍ତ୍ରର ସେତୁ କହେ ॥
ସ୍ୱର୍ଗ ମର୍ତ୍ତ୍ୟ ଯେ ଉଜପୁର । ଈଶ୍ୱର ଲୀଳା ଖେଳ ଘର ॥
ଏ ଷୋଳଦଳ ସୁମରିବ । ଏମନ୍ତେ ଶିବଙ୍କୁ ତୋଷିବ ॥
ଦ୍ୱାର ଗ୍ରହଣ କେବେ ଦେଇ । ରାମ କୃଷ୍ଣ ସେବାରେ ରହି ॥

---

୧୩—ଖ, ଗ—

ମହାଯୋଗୀ ଯେ ମହେଶ୍ୱର । ସୁମର ମହା ପାପ ହର
ଶିବ ଯେ ଜଗତର ନାଥ । ସର୍ବ ଦେବଙ୍କ ଶ୍ରେଷ୍ଠ ଯେ ତ ॥
ବାହାନ ବୃଷଭ ଉପର । କଣ୍ଠରେ ସର୍ପ କର ହାର ॥

ଶୁଣ ମୁକୁନ୍ଦ ମଧୁ ଦାସ । ଅନନ୍ତ ବଳ ନନ୍ଦ ଦାସ ॥
ଜୋହ୍ନ ରାମ ଯେ ରବୀ ରାମ । ନିରଞ୍ଜନ ବେହେରା ଉତ୍ତମ ॥
ଚବଣ ଗୋପାଳେ ହେ ଯେନ । କହଇ ଅଚ୍ୟୁତ ଅଧମ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ଶିବ-
ପଞ୍ଚାକ୍ଷର ମୂର୍ତ୍ତି ଉତ୍ପତ୍ତି କଥନେ
ନାମ ତ୍ରିଂଶ ପଟଳ ।

—:O:—

## ଏକତ୍ରିଂଶ ପଟଳ

ଦକ୍ଷିଣ ଚନ୍ଦ୍ର କୃଷ୍ଣ ଦେବ । ନନ୍ଦ ମୁକୁନ୍ଦ ଯେ ଯାଦବ ॥
ମୁକୁନ୍ଦ ଆନନ୍ଦ ପଗ୍ରଶ । ତୃଥ ଦେବ ହିଁ ମୂର୍ତ୍ତି କଶ ॥
ନାରାୟଣର ମନ୍ତ୍ର ବଧି । ଏରୂପେ ମନ୍ତ୍ର ମୂର୍ତ୍ତି ସିଦ୍ଧ ॥
ଶୁଣ ପରମ ସାଧୁ ଦାସ । ତୃଥ ମୁକୁନ୍ଦ ବେନି ଅଂଶ ॥
ଷୋଳ ଦଳରେ ଷୋଳକ୍ଷର । ସେ ପଦ୍ମେ ନାରାୟଣ ପର॥
କ ର ଆଦ୍ୟ ହ ତ୍ରୟ । ହ୍ରୀଂ ଏଥିରୁ ସଞ୍ଚରେଯେ ॥
କ କାର ଆଦ୍ୟ ଯେ ଚରଣ । ନଅର ପର ହସ୍ତ ଜାଣ ॥
କ ଅର ପ୍ରାନ୍ତ ଭୁଜ ଶୋଭା । ନାଦକୁ ଦଭୁଜ କରିବା ॥
ବିନ୍ଦୁ ନୟନ ନାସା ଶିର । କର୍ଣ୍ଣ ଭୂଷଣ ହୃଦ ତାର ॥
ଏମନ୍ତେ ଚତୁର୍ଭୁଜ ଧର । ଅଛନ୍ତି ସେ ସ୍ଥଳେ ବିହର ॥
ଆବର ନଅ ଯେ ଅକ୍ଷର । ଲକ୍ଷ୍ମୀର ଅଟଇ ବେହାର ॥
ଅ ମାଝାରେ ନଅ କଳା । କ କାରୁ ପାଦ ଜାତ ହେଲା ॥
ଉପର ଶିର ହସ୍ତ ନାସା । ମୁଖ ନୟନ କର ଆଶା ॥
ଏ ରୂପେ ଲକ୍ଷ୍ମୀ ନାରାୟଣ । ହୃଦ ପଦ୍ମରେ ମିଳା ଜାଣ ॥
ହ୍ରୀଁ ନାରାୟଣ ନମଃ । ଏ ଆଠ ମନ୍ତ୍ରଙ୍କ ଉତ୍ତମ ॥

ଏ ମନ୍ତ୍ର ଗୁରୁର ଠାକୁର । ଋଷି ଭଜନ୍ତି ହୃଦୟର ॥
ସ୍ତୁଁ ଯେ କ ରୁ ସମ୍ଭବରେ । ନା ଯେ ଅ ଅ ରୁ ପ୍ରଚରେ ॥
ସ ଯେ ଚ ରୁ ହୋଇଲା । ଅସ୍ତୁ ଯେ ଯ ରୁ ଜନ୍ମିଲା ॥
ହଁ ରୁ ଅ ଅସ ନଣ ଜାତ । ଅଷ୍ଟ ଅକ୍ଷରେ ଯେ ସମ୍ଭୂତ ॥
ଏମନ୍ତ ଜପି ଭୁକ୍ତି କର । ଗୋଲକ ସ୍ଥଳରେ ବହର ॥
ନାରାୟଣ ଯେ ଗୁରୁ ଜାଣ । ତାକୁ ସେବନ୍ତି ସାଧୁଗଣ ॥
ଗୁରୁ ସେବଲେ କୃଷ୍ଣ ପାଇ । କୃଷ୍ଣଙ୍କୁ ଗୁରୁ ବୋଲି କହୁ ॥
ଗୁରୁଟି ଗଡର କରତା । ଗୁରୁଟି ଅଟେ ପିତା ମାତା ॥
ବଷ୍ଣ ମଙ୍ଗଳ କାଳେ ପୁଣ । ଗୁରୁ ସନ୍ତୋଷେ ଶୁଭ ପୁଣ୍ୟ ॥
ପ୍ରଭାତେ ଗୁରୁ ସୁମରଣ । ଅକାଳ ଖଣ୍ଡଇ ଯେ ପୁଣ ॥
ସନ୍ଧ୍ୟାରେ ଗୁରୁ ଦଣ୍ଡବତ । ଦବାର ପାପ ଯାଇ ହତ ॥
ପୂର୍ଣ୍ଣିମୀ ଅମାବସ୍ୟା ଦିନରେ । ମିଳନ୍ତି ଯେ ଉଷା ସନ୍ଧ୍ୟାରେ ॥
ଏକାଦଶୀ ଯେ ସଂକ୍ରାନ୍ତି । ଯା ଗୃହେ ଗୁରୁ ଯେ ମିଳନ୍ତି ॥
ଗୃହ ପ୍ରବେଶ ବଷ୍ଣ ବେଳ । ଗୁରୁ ମିଳନ୍ତି ଯାର ଦ୍ୱାର ॥
ମାତା ପିତାର ଶ୍ରାଦ୍ଧ ଦିନ । ଯେ କରେ ଗୁରୁ ଦରଶନ ॥
ଦର୍ଶନ ପ୍ରାଣ ପ୍ରୟାଣରେ । ଗୁରୁ ମିଳନ୍ତି ଯାର ଦ୍ୱାରେ ॥
ଏକାଳେ ଗୁରୁ ସେବା କଲେ । ଯମ ଦଣ୍ଡ ଯେ ନାହିଁ ତାରେ ॥
ଶୁଣ ଯେ ବାରଟିଆ ଦାସ । ଏକାଳେ ମିଳି ଆମ୍ଭ ପାଶ ॥
ରହାସ କୀର୍ତ୍ତନ କରିବ । ଗୁରୁଙ୍କ ଦର୍ଶନେ ତରିବ ॥
ବାର ଜଣରେ ତୁମ୍ଭେ ସାର । ମୁକୁନ୍ଦ ଅନନ୍ତ ଧୀନର ॥
ଅଚ୍ୟୁତ ବଚନ ପାଳିବ । ଗୋପାଳ କୁଳେ କଥା ଥିବ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ନାରାୟଣ
ମନ୍ତ୍ର ମୂର୍ତ୍ତି ଭେଦ କଥନେ ନାମ
ଏକବିଂଶ ପଟଳ ।

---

# ଦ୍ୱାତ୍ରିଂଶ ପଟଳ

ବାଳକ ସୁଦାମ ମଥୁର । ଶିରରେ ବେଜ କର ଯୋଡ଼ ॥
ଦସ୍ୱା ଜଣବା ବାରେ ଆମ୍ଭ । ଶୁଡ଼ିବ ଆମ୍ଭ ମନ ଦମ୍ଭ ॥
ବ୍ରହ୍ମ ଗାୟତ୍ରୀ ମନ୍ତ୍ର କଥା । କହ ହେ ଗୁରୁ ମନ ବ୍ୟଥା ॥
ଶୁଣ ମୁକୁନ୍ଦ ହେ ସୁଦାମ । ଏ ମନ୍ତ୍ର ପାଞ୍ଚ ହେ ଉତ୍ତମ ॥
ବାର ଦଳରେ ଦଶାକ୍ଷର । ବ୍ରହ୍ମର ତହିଁ ଅଟେ ଘର ॥
ଓ ଅକ୍ଷର ଯେ ବ୍ରହ୍ମ ହୋଏ । ତ ଥ ତଳରେ ପାଦ ଶୋହେ ॥
ଓଅର ଆଦ୍ୟ ଭୁଜ ସେହୁ । ଇକାର ଆଦ୍ୟ ଭୁଜ ହୋଇ ॥
ଈକାର ପର ଶିର ଜାଣ । ବ୍ରହ୍ମ ସ୍ୱରୂପ ଏ ନିର୍ମାଣ ॥
ପ ଅ ଯେ ସାବିତ୍ରୀ ଅଟଇ । ପ ଅ ପାରୁଶେ ସ ରହୁ ॥
ଏଗାର ଦ ଭୁଜ ଅଟଇ । ପ ଅ ତଳ ଯେ ଚରଣ ହିଁ ॥
ପ ର ଉପରେ ଶିର କର । ବ୍ରହ୍ମ ସାବିତ୍ରୀ ଏଥି ଧର ॥
ବ୍ରହ୍ମ ଗାୟତ୍ରୀ ମନ୍ତ୍ର ବଶେ । ଗୋଲୋକ ଏହା ଘୋଷି ମିଶେ ॥
ଭୂ ଭୁର୍ବ ସ୍ୱ ମହ ଜନ । ତପଃ ସତ୍ୟ ଏ ମନ୍ତ୍ର ଯେନ ॥
ଆପ ଯେ ଜ୍ୟୋତି ରସାମୃତ । ବ୍ରହ୍ମ ଭୂରୁ ଯେ ମନ୍ତ୍ର ଯେତ ॥
ଭବ ସରୋଜ ଦସ୍ୱା କର । ବ୍ରହ୍ମ ଗାୟତ୍ରୀ ମନ୍ତ୍ର ଧର ॥
ତ ରୁ ଭୂରୁ ଭବ ଷରେ । ଶ ରୁ ମହତ ପ୍ରଚରେ ॥
ଅ ରୁ ଜନ ଯେ ହୋଇଲା । ରି କାରୁ ବସି ଜନମିଲା ॥
ତ ରୁ ତପନ ଉଦ୍ଧତ । ସ ରୁ ସତ୍ୟ ଯେ ସମ୍ଭୂତ ॥
ଆପ ଯେ ଥ ରୁ ସଞ୍ଚର । ଥ ରେ ନଅ କଳା ଧର ॥
ତ ରୁ ଜାତ ଯେ ଶବଦ । ଣୀ ଆଦ୍ୟରେ ରସ ଭେଦ ॥
ଦ ଅ ରୁ ଅମୃତ ଷରିଲା । ବ୍ରହ୍ମ ଭୂରୁରେ ବାସ କଲା ॥
ଭୁବ ସ୍ୱର୍ଲୋକୁ ଦସ୍ୱାପଥ । ଓ ରୁ ଏତେ ଷର ଜାତ ॥
ବ୍ରହ୍ମ ଗୋପାଳ ଯେଣୁ କହ୍ନ । ଜ୍ୟୋତି ଧାଇଲେ ଗୋପଗୋଇ ॥
ଜ୍ୟୋତି ଚିହ୍ନିଲେ ଯେ ବ୍ରାହ୍ମଣ । ଜ୍ୟୋତିଃ ସାଧନେ ବ୍ରହ୍ମଜ୍ଞାନ ॥
ଜ୍ୟୋତି ଜାଣିଲେ ଯୋଗୀ ଜନ । ଜ୍ୟୋତି ସକଳ ଜୀବ ବ୍ରହ୍ମ ॥

ବ୍ରହ୍ମ ଗାୟତ୍ରୀ ଜପ କର । ମରଣ ପଥରୁ ନିସ୍ତର ॥
ମରଣ କାଳେ ଯେଉଁ ଜ୍ଞାନ । ଏମନ୍ତ କରଇ କାରଣ ॥
ତୁମ୍ଭେ ଚବଣ ଗୋପ ଦାସ । ଏମନ୍ତ ଶୁଣି ପାପ ନାଶ ॥
ମୃତ୍ୟୁ କାଳରେ ପ୍ରାଣୀ ଯେତେ । ତୁମ୍ଭଙ୍କୁ ନ ଲେଉଟିବେ ଚତେ ॥
ଏ ହଂସ ମନ୍ତ୍ର ସୁମରିବେ । ପ୍ରାଣୀଙ୍କ ପାପ ବିନାଶିବ ॥
ଖୋଲ କରତାଳେ ରସ କର । ଉଦ୍ଧାର କରିବ ସଂସାର ॥
ଶୁଣ ହେ ଅନନ୍ତ ମୁକୁନ୍ଦ । ପବନ ଉତ୍‌ଥାନ ଆନନ୍ଦ ॥
ଅଚ୍ୟୁତ ଦାସ ଗଣ ଯେତେ । ତୁମ୍ଭର ହୃତେ ଏଡୁ ଗୀତେ ॥
ଏ ବାରଜଣ ପସ୍ତରିଲେ । ତୁମ୍ଭଙ୍କୁ ପଥ ଦେଖାଇଲେ ॥
ଜଗତେ ଏ ଗୀତା ପଢ଼ିବ । ଉତ୍ତମ ଗୁରୁଙ୍କୁ ପୁଛିବ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ଜାଣ । ଅଷ୍ଟ ପ୍ରହର ରସ ଚହ୍ନ ॥
ଶୁଦ୍ଧା ଅବାଡ଼ ଯେ ସମାଧି । ଜ୍ୟୋତକ ଯେଉଁ ଥିବ ସାଧି ॥
ଏ ଆଠ ଗୁଣ ସାଧିଥିବ । ସେ ଜନ ଏ ପାଠ ବୁଝିବ ॥
ମନ୍ତ୍ର ପଢ଼ିଣ ଶିକ୍ଷା ଗୁରୁ । ମୁ କାର ପଣେ ମତ ଗରୁ ॥
ବସ୍ତ୍ର ଧନରେ ଲୋଭ ବହି । ଶିଷ୍ୟ କରନ୍ତି ଗୁରୁ ହୋଇ ॥
ଏ ପାଠ ଯେଉଁ ନ ଜାଣନ୍ତି । ବିଅର୍ଥେ ସଂସାରେ ଭ୍ରମନ୍ତି ॥
ତୁମ୍ଭେ ଛାଡ଼ିଲ ଧନ ପଣ । ସେବିଲ ଗୁରୁଙ୍କ ଚରଣ ॥
ବାର ବରଷ ପସ୍ତରିଲ । ଜଲ କୁମ୍ଭରୁ ଟଳେ ନେଲ ॥
ରହିଲ ତୁମ୍ଭ ଦଲ ଯାକ । ତୁମ୍ଭେ ତ ଅଟ ହେ ବିବେକ ॥
ବାର ବରଷ ବାର ଦିନ । ଗୁରୁଙ୍କୁ ନ ପୁଛେ ବଚନ ॥
କିଏ ଜାଣିବ ଏଥି ଭାବ । କଢ଼ି ପୁଷ୍ପ କି ବାସ ହେବ ॥
ଗୁରୁଙ୍କୁ ସେବ ଯେ ପସ୍ତରେ । ବାସନା ପୁଷ୍ପ ସେହି ନରେ ॥
ଗୁରୁ ନ ସେବ ନ ପସ୍ତର । କଢ଼ି କୁସୁମ ସେହି ନର ॥
ଫୁଟିଲ ପୁଣ୍ୟ ବାର ଦାସ । ଅଚ୍ୟୁତ ବଚନ ହେ ଘୋଷ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ବ୍ରହ୍ମସାବିତ୍ରୀ
ମନ୍ତ୍ର କଥନେ ନାମ ଦ୍ୱାତ୍ରିଂଶ ପଟଳ ॥

## ନବବିଂଶ ପଟଳ

ଯାଦବ ମୁକୁନ୍ଦ ଅନନ୍ତ । ଆମ୍ଭ ବିନୟ ଶୁଣୁ ଚିତ୍ତ ॥
କାମଦେବର ସ୍ଥାନ କହ । ଫିଟିବ ମନର ସନ୍ଦେହ ॥
ଯାଦବ ଅନନ୍ତ ହେ ଶୁଣ । ମୁକୁନ୍ଦ ପଣ୍ଡିତ ସୁଜାଣ ॥
ଦଶ ଦଳର ପରେ ପୁଣ । ଛଡ଼ ଅକ୍ଷର ପରମାଣ ॥
ବ (ଅ) ଭ (ଅ) ଯେ ମ (ଅ) ଚିହ୍ନ ।

ଯ, ର, ଲ, ଅ କୁ ଘେନ ॥

ବ, ଭ, ଗ, ଯ, ର, ଲ ।

ଏମନ୍ତେ ଷଡ଼ ଯେ ଅକ୍ଷର । କାମାକ୍ଷି କାମଦେବ ଘର ॥
ବ ରେ ଗାର ଯେ ବସିଲେ । ଉପରେ ଇକାର ଥୋଇଲେ ॥
ଆବର ଏକ ଗାର ଦେବ । ପଢ଼ିଲେ କାଅକ୍ଷର ହେବ ॥
ମ' ଅକ୍ଷର ମିଶାଇବ । ଦରେ ଦେବ ଦୁଇ ହେବ ॥
କା ଅକ୍ଷରକୁ ଯେ ଆଣି । ମ ରେ ମାତ୍ରା ଦେବ ପୁଣି ॥
ଯ ରେ ଇକାର ଯେ ରଖ । ମଧ୍ୟ, ମାତ୍ରର ଭୁଜ ଦେଖ ॥
ଯ ର ତଳପାଦ ହୁଏ । ଉପରେ ଶିର ନାସା ଶୋହେ ॥
କାମାକ୍ଷୀ ଦେବୀ ଏ ଅଟଇ । ଏ ମାୟା ଦେବୀ ସର୍ବ ମୋହି ॥
ବ ରେ ଗାର ଦେଲେ ପୁଣ । ଯେ ହୋଏ ଦୁଇ ଯେ ଚରଣ ॥
ଉପର ଶିର ଭୁଜ ମୁଖ । କଳାକୁ କଳା ପକ୍ଷେ ଦେଖ ॥
ଯେସନେ ବୀଜେ ସର୍ବ ଥାଇ । ଚେର ପତ୍ର ଯେ ଫଳ ହୋଇ ॥
ଡାଳ ସହିତେ ବୃକ୍ଷ ବଢ଼େ । ତେସନେ ବୀର୍ଯ୍ୟ ବୀଜ ଗଢ଼େ ॥
କାମଦେବ କାମାକ୍ଷୀ ନାମ । ଏ ମନ୍ତ୍ର ଜପିବ ଉତ୍ତମ ॥
ବ ରୁ ଇ ଅ ସଞ୍ଚରଇ । ମ ଅକ୍ଷର ମିଶେ ତହିଁ ॥
ବ ରେ ଦେବ ଯେ ଅକ୍ଷର । ଇ ଯେ ଯ ଅକ୍ଷରର ॥
କ ରୁ ନ କଳା ଏକ । ମ ମିଶିଲେ ମନ୍ତ୍ର ଏକ ॥
ଏ ମନ୍ତ୍ର ଜପି ତୃପ୍ତି କର । ଏରୂପ ଚନ୍ଦ୍ରବ ହୃଦର ॥

ତେବେ କାମ କୃଷ୍ଣଙ୍କୁ ପାଇ । ଦ୍ୱାରେ କାମାକ୍ଷୀ ଦେବୀ ଥାଇ ॥
ଯନ୍ତ୍ରମାନଙ୍କ ଯନ୍ତ୍ରପଣ । କାମାକ୍ଷୀ ଭୃଙ୍ଗି ଦିଏ ଟାଣ ॥
ସତୀମାନଙ୍କ ସତ୍ୟବ୍ରତ । କାମ ଯେ ସ୍ୱର୍ଗଙ୍କୁ ନିଶ୍ଚିତ ॥
ନୟନ ମଧ୍ୟେ କାମକଳା । ପ୍ରାଣୀ ଯେ ଦେଖି ହୋନ୍ତି ଭୋଳା ॥
ସର୍ବ ସମ୍ପଦ କାମ ଅଂଶ । ଶୁଣିଲେ ପ୍ରାଣୀ ଯେ ଅବଶ୍ୟ ॥
ଭ୍ରୂରୁ ମଧ୍ୟରେ ନିତ୍ୟ ସ୍ଥାନ । ଏ କାମ ଅଟେ ଜୀବ ଜାଣ ॥
ଏଣୁ ଏ କାମକୁ ସାଧିବ । ଅଲପ ଅଲପେ ରଖିବ ॥
ଷଣ୍ଢ ଗୋପାଳ ନପୁଂସକ । କାମ କଳାକୁ ନାହିଁ ଶୋକ ॥
ଆବର ଶୁଣ୍ଢ ଗୋପ ଦାସ । କାମକୁ କରିବ ଅଭ୍ୟାସ ॥
ଶନି ରବି ଯେ ମଙ୍ଗଳରେ । ଦଶମୀ ପୌର୍ଣ୍ଣମୀ ତିଥିରେ ॥
ଚତୁର୍ଦ୍ଦଶୀ ଅମାବାସ୍ୟା ଦିନ । ପଦ୍ମପ ପାହାନ୍ତି ଆସନ ॥
ସଯୋଗୀ ଯୋଗ ଏ ଧାରଣ । ଛଡ଼ ଗୋପାଳେ ତୁମ୍ଭେ ଜାଣ ॥
ଆବର ଧାରଣା ସାଧନ । ସଙ୍ଗ ହୋଇବ ଯେତେ ଦିନ ॥
ସର୍ପ ଫଣାକୁ ଓଲଟାଇ । ରଖିବ ଘଣ୍ଟିକାରେ ନେଇ ॥
ପବନ ନିରୋଧ କରିବ । ବିନ୍ଦୁ ଯେ ନିଷ୍ଟଳେ ରହିବ ॥
କୋଟିକେ ଗୋଟିଏ କରନ୍ତି । ଏ ବଡ଼ କଷ୍ଟସାଧ୍ୟ ହୋନ୍ତି ॥
ପାରିଲେ ଏ ପଥ ଧରିବ । ନୋହିଲେ ସଯୋଗେଣ ଥିବ ॥
ସନକାଦିମାନେ ଏ ପଥ । ସାଧନ କରନ୍ତି ନିଶ୍ଚିତ ॥
ଜନକାଦି ଯେ ସନକାଦି । ଦିପଥେ ପ୍ରାଣୀମାନେ ବନ୍ଦୀ ॥
ଭୋଜନ ସାଧି ନ ପାରନ୍ତି । ଏ ବଡ଼ କଷ୍ଟେ ସାଧ୍ୟ ହୋନ୍ତି ॥
ଭଜନ କରନ୍ତି ବହୁତ । ସେ ଗମେ ଜନକାଦି ମତ ॥
ଅଲପ ଭୋଜନ ଯେ କରେ । ସନକାଦି ଯେ ପଥ ଧରେ ॥
ଦୁଇ ପଥରେ ବାର ଦାସ । ମିଶିଣ କର ହେ ବିହାସ ॥
ମୁକୁନ୍ଦ ଅନନ୍ତ ସୁଦାମ । ଗୋବିନ୍ଦ ଯାଦବ ବଛିମ ॥
ଜନକାଦି ଯେ ଛଡ଼ ଧର । ଅଂଶ ରଖିଣ କ୍ଷତ କର ॥
ଉତ୍ଥାନ ପବନ ଦି ଜଣ । ମଥୁରି ବୃନ୍ଦା ଗୃହଜଣ ॥
ସନକାଦି ସେ ପଥ ଧର । ଭଜନ୍ତି ପକ୍ଷ ତୁମ୍ଭେ ସାର ॥

ନାଦ ପୂଜ ଯେ ତୁମ୍ଭେ କର । ନାଦ ପୂଜନ୍ତି ସବୁ ସାର ॥
ମଧୂ ସନକ ପଥ ଧର । ବାଳକ ଜନ ପଥ କର ॥
ଅତ୍ୟୀତ ବଚନ ପାଳିବ । ଜନ୍ମି ତେ ସଂସାରେ ଖେଳିବ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ କାମଦେବ
କାମାକ୍ଷୀ ଦେବୀ ମନ୍ତ୍ର ମୂର୍ତ୍ତି ବର୍ଣ୍ଣନେ
ନାମ ତ୍ରୟସ୍ତ୍ରିଂଶ ପଟଳ ।

—※—

## ଚତୁଃତ୍ରିଂଶ ପଟଳ

ମଧୂ ମଥୁର ଯେ ପଦ୍ମର । ମୁକୁନ୍ଦ ଶିରେ କର ଧର ॥
ଅନନ୍ତ ଦାସ ଦୟାକର । ଏ ପଦ୍ମର ଦଳର ବିଚାର ॥
ଅନନ୍ତ ଦାସ ତୁମ୍ଭେ ଶୁଣ । କର୍ଣ୍ଣ ଗୋପାଳ ବାରଜଣ ॥
ରାମ ଭରଥ ଧର୍ମ୍ମ ଦାସ । ବିଷ୍ଣୁ ବଳ ହେ ଦୁଇ ଅଂଶ ॥
ଛତ୍ର ତଳରେ ପଦ୍ମ ବସେ । ବ ଅରେ ଶ ତହିଁ ମିଶେ ॥
ବ ଶ ଯେ ସ ଷ ପଦ୍ମ । ଗଣପତି ଆଦି କୁମାରୀ ॥
ହଁ ଉରୁ ଗଣେଶ ଛଟିଲା । ଏ ଗଣପତି ନାମ ହେଲା ॥
ଶ ରୁ କ ନାମେ ହୋଇ । କୁମାରୀ ନାମ ସେ ବୋଲଇ ॥
ପ ଅକ୍ଷରେ ଗାର ଦେବ । ସେ ପୁଣ ବେଦଭୁଜ ହେବ ॥
ତଳକୁ ପାଦ ଶୋଭବନ । ଉପର ଭୁଜ ଶିର ଜାଣ ॥
କୁମାରୀ ଦେଖ ଏ ଅଛଇ । ଉତ୍ଥାନ କରି ବସିଥାଇ ॥
ବ ର ତଳେ ଗାର ଦେବ । ଏ ବେଦ କରଣ ହୋଇବ ॥
ବ ରେ ସାତ ଅଙ୍କ ବସେ । ଏ ବେଦ ଭୁଜ ପରକାଶେ ॥
ମୁଖ ନୟନ ନାସା ଶିର । ଏ ଗଣପତିର ଶରୀର ॥
କୃଷ୍ଣର ପରମାନନ୍ଦ ନାମ । ଏ ମନ୍ତ୍ର ଜପିବ ଉତ୍ତମ ॥

କୃଷ୍ଣ ବ ରୁ ସଞ୍ଚରଇ । ସ ରୁ ରୂପ ଜନମଇ ॥
ପରମାନନ୍ଦ ନମାମ୍ୟହଂ । ଗଣପତିଙ୍କ ସ୍ତୁତି ଏହୁ ॥
ତେବେ ସେ ଦୁଆର ଛାଡ଼ଇ । ରାମ କୃଷ୍ଣଙ୍କ ଭେଟ ପାଇ ॥
ଷୋଳରେ ଶିବ ବସିଥାଇ । ବାରରେ ବିଷ୍ଣୁ ବସିଛଇ ॥
ଦଶରେ ବ୍ରହ୍ମା ଯୋଗାସନ । ଛଡ଼ରେ କାମଦେବ ଜାଣ ॥
ଚାରରେ ଗଣପତି ରହେ । ନାମ ଜପିଣ ବଡ଼ ହୁଏ ॥
ଡାହାଣ ଭାଗରେ ପରମ । ବାମ ଭାଗରେ ଜୀବ ଗମ୍ୟ ॥
ଜୀବ ପରମ ଏହୁ ଦୁଇ । ଅନେକ ଘଟ ସେ ଗଢ଼ାଇ ॥
ସ୍ଥାବର ଜଙ୍ଗମ ଯେ କୀଟ । ପତଙ୍ଗ ଆଦି ନାନା ଘଟ ॥
ନୂଆ ପୁରୁଣା କରୁଥାଇ । ଲୀଳା କ୍ରମନ୍ତେ ରୂପ ହୋଇ ॥
ସ୍ଥାନ ସ୍ଥାନକେ ମୂର୍ତ୍ତି ଧରେ । ଏକରୁ ବହୁ ରୂପ ଧରେ ॥
ମନ୍ତ୍ର ଅଟଇ ତାର ଯଥା । କଥା କରନ୍ତି ମଧୁପୋତା ॥
ପଞ୍ଚାଶ ଅକ୍ଷରଟି ସାର । ଅକ୍ଷରୁ ବାର ମାତ୍ରା ଧର ॥
ସକଳ ଗ୍ରନ୍ଥ ବୀଜ ଏହୁ । ପଣ୍ଡିତେ ଭେଦ ନ ଜାଣଇ ॥
ଜଳାନ୍ତି ଯନ୍ତ୍ର ଯେ ଭେଦଛି । ତାକୁ ଆଲୁଅ ଦିଶୁଅଛି ॥
ଯାଲାନ୍ଧ୍ର ଯନ୍ତ୍ର ଭେଦ ନାହିଁ । ସେହିଟି ବନ୍ଦ୍ୟା ଅନ୍ଧ କହି ॥
ଗୁରୁ ସେବକ ହୋଇ ଦାସ । ତେଣୁ ପାଇଲା ଯନ୍ତ୍ର ରସ ॥
ପ୍ରଥମ ଖଣ୍ଡ ତୁମ୍ଭ ହିତେ । ଦ୍ୱିତୀୟ ଖଣ୍ଡ କଲି ଗୀତେ ॥
ତୃତୀୟ ଖଣ୍ଡ ଏ ଶୁଣିଲ । ଜନ୍ମର ସୁଫଳ ଲଭିଲ ॥
କୃଷ୍ଣ କରୁଣା ମୋତେ କଲେ । ଗଣେଶ ହସ୍ତରେ ରହିଲେ ॥
ଏଣୁ ସକଳ ମୁନି ଗଣ । ଗଣେଶ ବନ୍ଦନ୍ତି ଅଗ୍ରେଣ ॥
ବିଘ୍ନହରତା ସେ ଅଟନ୍ତି । ବିଘ୍ନ ନ କଲେ ବନ୍ଦ୍ୟା ଦ୍ୟନ୍ତି ॥
ଶୁଣିଲ ଗଣପତି କଥା । ଜଳାନ୍ତି ଯନ୍ତ୍ରର ବାରତା ॥
ତୃତୀୟ ଖଣ୍ଡ ଏ ଶୁଣିଲ । ମନରେ ଏହା ଘେନ ଭଲ ॥
ଏ ପାଠ ନିତି ଶୁଣୁଥିବ । ଶୁଣିଲେ ଅନ୍ଧାର ଫିଟିବ ॥
ମଦ୍ୟ ମାଉଁସ ଧୂମ ଗଞ୍ଜା । ପର ସ୍ତ୍ରୀ ସଙ୍ଗ କର ତେଜ୍ୟା ॥
ଅଶୁଚ ମିଛ ଯେହୁ କହି । ପର ଧନରେ ଚିତ୍ତ ଦେଇ ॥

ଗୁରୁ ସେବାରେ ସହି ଦୃଢ଼ । ପିତା ମାତାରେ ସେବା ଗୂଢ଼ ॥
ଅତିଥି ସେବା ମହୋତ୍ସବ । ଯେ ଶାସ୍ତ୍ର ପଥ ନ ଶୁଣିବ ॥
ସେତେ ଜନକୁ ନ କହିବ । କହିଲେ ବିପତ୍ତି ପଡ଼ିବ ॥
ଗୁରୁବାରକୁ ଗୁରୁବାର । ପୂଜା କରିବେ ସନ୍ଧ୍ୟାବେଳ ।
ପଢ଼ିବ ଘୃତ ଦୀପ ଜାଳ । ଦେବ ଅମୃତ ରସାବଳୀ ॥
ଅଳୁଡ଼ ଘରେ ନ ରଖିବ । ମୂର୍ଖ କୁଟୁମ୍ବେ ନ ବୁଝିବ ॥
ବାର ଗୋପାଳ ତୁମ୍ଭେ ଶୁଣ । ଏ ବଡ଼ ଗୁପତ ଗହନ ॥
ତୁମ୍ଭର ପୁତ୍ରମାନେ ପୁଣ । ଶୁଣିଲେ ହୋଇବେ କାରଣ ॥
ଆଉର ନାଥ ପନ୍ଥ ଯେତେ । ତହିଁବେ ଶୁଣିଲେ ଏ ଗ୍ରନ୍ଥେ ॥
ଖୋଲ କର୍ତ୍ତାଳ ଶିକ୍ଷା ଦାସ । ତୁମ୍ଭର ହେବେ ଯେତେ ଅଂଶ ॥
ସେମାନେ ଏକଥା ଶୁଣିଲେ । ଅନ୍ଧାର ଫିଟିଯିବ ଭଲେ ॥
ନିର୍ଗୁଣ ସଗୁଣାଦି ମତ । ଏଥିରେ ଅଛି ମନ୍ତ୍ର ତନ୍ତ୍ର ॥
ଏ ପାଠ ଯେ ବୁଝି ପାରିବ । ସେ ଜନ ଗୁରୁ ଅଙ୍ଗ ହେବ ॥
ଭିକ୍ଷା ମାଗିବା ବଡ଼ ସୁଖ । ଗୁରୁପଣ ଯେ ବଡ଼ ଦୁଃଖ ॥
ଭାଗ୍ୟରେ ଗୁରୁ ଅଙ୍ଗ ଧରେ । ଗୁରୁ ନିସ୍ତାରନ୍ତି ଯେ ନରେ ॥
ଗୁରୁ ନରକ ଉଦ୍ଧାରଣ । ଗୁରୁଟି ଶୁଭ କର୍ତ୍ତା ଜାଣ ॥
ଭାଗ୍ୟରେ ଥିବ ଯେ ଭଜନ । ଗୁରୁଙ୍କ ପୂଜା ଆଦ୍ୟସ୍ଥାନ ॥
ଅନେକ ଜନ୍ମେ ଭାଗ୍ୟ ଥିଲେ । ତତ୍ତ୍ୱ ଗୁରୁ ମିଳନ୍ତି ଭଲେ ॥
ଅତତ୍ତ୍ୱ ଗୁରୁ ଅଭାଗ୍ୟରେ । ମିଳନ୍ତି ଏକ ଏକ ନରେ ॥
ଯନ୍ତ୍ର ମନ୍ତ୍ର ତନ୍ତ୍ର ଯେ ଜାଣ । ଅଷ୍ଟ ପହରା ରସ ଗୁଣ ॥
ଗୁମ୍ଫା ଅବାଡ଼ ଜ୍ୟୋତି ସ୍ଥାନ । ଶମାଦି କରନ୍ତି ସାଧନ ॥
ଏହାଙ୍କୁ ତତ୍ତ୍ୱ ଗୁରୁ କହି । ତାହାଙ୍କୁ ପୁଛି ତତ୍ତ୍ୱ ପାଇ ॥
ତତ୍ତ୍ୱ ଜାଣିଣ ମୂର୍ଖ ଜଣ । ଶ୍ରୀ ଭାଗବତେ ଏ ପ୍ରମାଣ ॥
ଅତତ୍ତ୍ୱ ଗୁରୁ ଶିକ୍ଷା କଲେ । ଅଳପ ଜଳେ ମୀନ ଥିଲେ ॥
ଅଳପେ ସେହୁ ନାଶ ଯାଇ । ମନ ସଂଶୟ ନ ଫିଟଇ ॥
ସମୁଦ୍ର ଜଳେ ମୀନ ଥାଇ । ସେ ଯେହ୍ନେ ବଡ଼ ମତ୍ସ୍ୟ ହୋଇ ।
ଅତତ୍ତ୍ୱ ତତ୍ତ୍ୱ ଏହି ମତ । ସଂସାରେ ଗୁରୁ ଯେ ବହୁତ ॥

ଶିଷ୍ୟ କରିବେ ତତ୍ତ୍ୱ ଜାଣି । ପାଣି ଖାଇବ ଜାଣି ଗୁଣି ॥
ତୁମ୍ଭେ ଜାଣିଲ ତତ୍ତ୍ୱ ସାର । ସଂସାରେ ଗୁରୁପଣେ ଫେର ॥
ଖୋଲ କରତାଳେ କୃଷ୍ଣ କଥା । ଗାୟନ କରିବେ ସର୍ବଥା ॥
ପ୍ରାତଃକାଳ ବା ସନ୍ଧ୍ୟାକାଳ । ପ୍ରଭାତେ ବସିବ ନିଶ୍ଚଳ ॥
ଅଣଅକ୍ଷର ମୂର୍ତ୍ତି ମନ୍ତ୍ର । ଜପ ଲକ୍ଷ୍ୟେ କର ତଦନ୍ତ ॥
ଏ ତତ୍ତ୍ୱ ଏକ ଏକ ଶିଷ୍ୟେ । ଦେଇ କରିବେ ଉପଦେଶେ ॥
ମୁକୁନ୍ଦ ଅନନ୍ତ ଆନନ୍ଦ । ସବନ ଉତ୍ଥାନ ଗୋବିନ୍ଦ ॥
ଯା ଗୃହେ ଏ ପାଠ ରଖିବ । ବିଷ୍ଣୁ ପ୍ରତିମା ପ୍ରାୟେ ଥିବ ॥
ଜୀବନ୍ତେ ସୁଫଳ ହୋଇବ । ମରଣେ ଗୋଲୋକେ ମିଶିବ ॥
ଧନ ସମ୍ପତ୍ତି ପୁତ୍ର ଭାଇ । ଦୁହିତା ଭାର୍ଯ୍ୟା ଜୁଆଇଁ ॥
ଏହାଙ୍କୁ ଦେଖି ଧନ ବଢ଼ି । ଗୁରୁ ବୈଷ୍ଣବ ନ ସେବଇ ॥
ଏ ପୁଣି କାଳେ ନାଶ ଯାଇ । ଧନ ଅର୍ଜିବା ବ୍ୟର୍ଥ ହୋଇ ॥
ଯେ ଧନ ଦୁଃଖେ ଅରଜିବ । ସେ ଧନ ବିଭାଗ କରିବ ॥
ଅଧେକ କୁଟୁମ୍ବ ପୋଷିବ । ଅଧେକ ବନ୍ଧୁ ବେଭୁସିବ ॥
ଆବର ଅଧେକ ଯେ ପୁଣ । ଦେବ ଯେ ଅତିଥି ବ୍ରାହ୍ମଣ ॥
ଆବର ଭାଗେକ ଯେ ଥିବ । ଗୁରୁ ବୈଷ୍ଣବେ ସମର୍ପିବ ॥
ତେବେ ସଂସାରୁ ପାର ହୋଇ । ପଦ୍ମରେ ପାଣି ନ ଲାଗଇ ॥
କାଇଞ୍ଚ ପଙ୍କେ ଯେସନ୍ତ ନାଶ । ଶୁଣ ଚୈତନ୍ୟ ଗୋପ ଦାସ ॥
ଦାର ଆବୋର ଗୃହ କର । କେବା ବୈରାଗ୍ୟ ପଥ ଧର ॥
ବାରଟିଆ ଯେ ଦାସମାନ । ବୃନ୍ଦାବନରେ ତୁମ୍ଭ ସ୍ଥାନ ॥
ଗମି ପାରିବ ଯେତେ ଦୂର । ତୁମ୍ଭଙ୍କୁ ମିଳିବ ଆଧାର ॥
ଆବର କର୍ଣ୍ଣଦାସ ବାର । ପଢ଼ତ ଗୋପାଳ ଉଚ୍ଚାର ॥
ଉଆ ଚାଉଳ ହାଣ୍ଡି ନୂଆ । ଭୋଜନେ କରିବ ସୋରହା ॥
ପୁରୁଣା ହାଣ୍ଡି ଅନ୍ନମାନ । କେବେହେଁ ନ କର ଭୋଜନ ॥
ତୁମ୍ଭର ବଂଶ ଉଜଳିବ । କେବେହେଁ ମଳିନ ନୋହିବ ॥
ଶୁଦ୍ଧ ଅନ୍ନ ଯେ ଶମ୍ଭୁ ଅନ୍ନ । ଶ୍ରାଦ୍ଧ ଅନ୍ନ ପତିତ ଜନ ॥
ଏତେକ ଅନ୍ନ ନ ଭକ୍ଷିବ । ଗୋପାଳ ମନ୍ତ୍ରେ ଭୋଗ ଦେବ ॥

ମଦ୍ୟ ମାଉଁସ ଛଡ଼ାଇବ । ଧୂମ ଗଞ୍ଜାରୁ ନବର୍ତ୍ତିବ ॥
ରାମଚନ୍ଦ୍ରର ବାର ଦାସ । ଏ ପଥ କରିବ ଅଭ୍ୟାସ ॥
ମୁକୁନ୍ଦ ଅନନ୍ତ ଦ୍ୱାଦଶ । ଏତ ପନ୍ତରେ ନାହିଁ ଆସ ॥
ନବତନ ଯେ ନୂଆ ପାଗ । ନିଜ ହସ୍ତରେ କରେ ଯୋଗ ॥
ଶ୍ରଦ୍ଧାରେ ଏହାକୁ ତ ଦେବ । ଦ୍ୱନ୍ଦ୍ୱ ଛନ୍ଦରେ ନ ମିଶିବ ॥
ଘରେ କାଠରେ ହେବ ପୂଜା । ଯୋଗୀନ୍ଦ୍ର ଗଣେ ସ୍ୱେ ତଥୋଜା ॥
ମୂଢ଼ ପତିତ ଗୋପକୁଳ । କଳାରେ ମେଳେଛ ଏ ମେଳ ॥
ଉତ୍ତମ ଶୁଦ୍ଧ ଜାତି ଏହି । ଆଗୁରହ୍ମାନେ ନାଶ ଯାଇ ॥
ପୁରାଣ ଗ୍ରନ୍ଥେ ପରମାଣ । ବଂଶୀ ଗଉଡ଼ ଅଟେ ଟାଣ ।
ଶ୍ରୀ ଭାଗବତେ ସନମତ । କୃଷ୍ଣ ଭୁଞ୍ଜିଲେ ଗୋପ ଭାତ ॥
କଳାରେ ମିଷ୍ଟ ପାକମାନ । ଶ୍ରୀ ନନ୍ଦନନ୍ଦରେ ଭୋଜନ ॥
ଏ କୁଳେ ଉତ୍ତମ ଆଧାର । ଆଗୁର କର ଭୋଗକର ॥
ରାମଚନ୍ଦ୍ର ଭରଥ ଶୁଣ । ଅଚ୍ୟୁତ ବଚନ ପ୍ରମାଣ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଭୃଗାସ୍ଥଖଣ୍ଡେ
ଗଂ ପଥ ମନ୍ତ୍ର ମୂର୍ତ୍ତି କଥନେ
ନାମ ଚତୁଃତ୍ରିଂଶ ପଟଳ ।

---

## ପଞ୍ଚତ୍ରିଂଶ ପଟଳ

ମୁକୁନ୍ଦ ଅନନ୍ତ କହୁଅଛନ୍ତି ଶ୍ରୀରାମରେ ।
ଯନ୍ତ୍ର ମଧ୍ୟେ ମନ୍ତ୍ର ମୂର୍ତ୍ତି କେବଣ ପ୍ରକାରେ ॥
ଶିଷ୍ୟର ମନ କେମନ୍ତେ ହୋଇବାକ ବୋଧ ।
ଗୁରୁ କୃପା କଲେଣ ଫିଟିବ ମାୟା ଧନ୍ଦ ॥
ଶିଷ୍ୟ ଭକ୍ତ ଦେଖିଣ ଯେ କହିବା ତୋହରେ ।
ଯନ୍ତ୍ର ମଧ୍ୟେ ମନ୍ତ୍ର ଯେଉଁ ମୂର୍ତ୍ତି ପରକାରେ ॥
ଆଧାର ଲିଙ୍ଗ ଯେ ନାଭି ହୃଦ କଣ୍ଠ ପାଞ୍ଚ ।

ଅକାର ଉକାର ମକାର ଅର୍ଦ୍ଧ ବିନ୍ଦୁ ପଞ୍ଚ ।।
ପିଙ୍କି ରସ୍ତି ବୃଦକ୍ଷର ବସନ୍ତି ତହିଁରେ ।
ପର ରଜସ ଶବଦ ବେଢ଼ିଣ ପାଶରେ ।।
ଉକାର ଉପରେ ଗାର ଆକାରେ ମିଶିଣ ।
ସାର ବେନି ପାଶେ ହଉଁ ଛଉଁ ଯେ ବସିଣ ।।
ତଥିପରେ ମଣ୍ଡଳ ଗୋଟାଏ ବେଢ଼ିଅଛୁ ।
ପଞ୍ଚ କଳା ଯେନି ତହିଁ ଆକାର ରହିଛୁ ।।
ଅକାର ଆଡ଼ୀ ଅଟେ ଯେ ନଅ ବେନିକଳା ।
ସନ୍ଧ ସଂଧି ବଇଷ୍ଣବଜନଙ୍କର ମେଳା ।।
ଅକାର ଉକାର ଯେ ଏକାର ଇକାରରେ ।
ଉକାର ବେଢ଼ିଣ ଅଛୁ ଅକାର ଶିରରେ ।।
ଶେତରଙ୍ଗ କୁଙ୍କୁମ ଶ୍ୟାମଳ କଳାମାନ ।
କୋଟି କୋଟି ସୂର୍ଯ୍ୟ ଚନ୍ଦ୍ର ଅଛୁ ସେହି ବର୍ଣ୍ଣ ।।
ନଅ ଆଦ୍ୟ କୃଷ୍ଣ ଅଟେ ନଅ ପ୍ରାନ୍ତ ରାଧା ।
ବେନି ଅଙ୍ଗ ଏକ ଅଟେ ହୃଦେ ହୃଦବନ୍ଧା ।।
ନଅର ପ୍ରାନ୍ତର କଳା କୃଷ୍ଣର ଚରଣ ।
ଆର ନଅ ଆଦ୍ୟ କଳା ରାଧା ପାଦ ଜାଣ ।।
ଆଦ୍ୟ ନଅ କଳା ପୁଣି କୃଷ୍ଣ ପାଦ ରହି ।
ପ୍ରାନ୍ତ ନଖେ କଳା ପୁଣ ରାଧା ପାଦ ହୋଇ ।।
ଏମନ୍ତ ହୋଇଣ ବେନି ପାଦ ଛନ୍ଦାଛନ୍ଦ ।
ସେମାନେ ଭେଦ ଯେ ତତ୍ତ୍ୱ ଗୁରୁମାନେ ଭେଦ ।।
ନଅ ପରେ ହୃଦ ହୋଇ ଆଦ୍ୟ ନଅ କୃଷ୍ଣ ।
ପ୍ରାନ୍ତ ନଅ ରାଧା ହୃଦେ ଭେଦଣ ଏ ଚିହ୍ନ ।।
ନଅ ମଧ୍ୟେ କୃଷ୍ଣ ରାଧା ହୃଦ ବେନି ଶୋହେ ।
ନଅ ବେନି ପାଶେ ପୁଣ ଦୁଇ ଭୁଜ ରହେ ।।
ଏମନ୍ତେ ଯେ ଯୁଗଳ ରାଧା କୃଷ୍ଣ ଛନ୍ଦା ।
ହୃଦରେ ହୃଦୟ ବେନି ହୋଇଅଛୁ ବନ୍ଧା ।।

ନଅ ଆଦ୍ୟ କୃଷ୍ଣଙ୍କର ନଅ ପ୍ରାନ୍ତ ରହ ।
ମୁଖେ ମୁଖ ବନ୍ଧନ ଅଧରୁ ସୁଧା ବହ ॥
ନୟନ ଯେ କର୍ଣ୍ଣ ନାସା କଣ୍ଠ ହୃଦ ଶୋଭା ।
ଏମନ୍ତ ରୂପକୁ ଯୋଗୀଜନ ମନ ଲୋଭା ॥
ନଅର ପ୍ରାନ୍ତ ମଧ୍ୟରେ ଉକାରର କଳା ।
ତେଣୁ କରି ରାଧା ଅଙ୍ଗ ସୁବର୍ଣ୍ଣ ଉଜ୍ଜ୍ୱଳା ॥
ନଅର ଆଦ୍ୟ ଅଂଶ ଯେ ଉ ୍ାର ଅଟଇ ।
ତେଣୁ କରି କୃଷ୍ଣ ଅଙ୍ଗ କଳାବର୍ଣ୍ଣ ହୋଇ ॥
କଳାକୁ ଗଉର ବର୍ଣ୍ଣ ଶୋଭା ପୁଣ ପାଏ ।
ଏଣୁ ଦିବ୍ୟ ରାଧା କୃଷ୍ଣ ଅଣଷରେ ରହେ ॥
ଅନାଦି ପୁରୁଷ ବୋଲି କେ ସାଧୁ ବୋଲନ୍ତି ।
ଅବ୍ୟକ୍ତ ଅଗ୍ରୁତ ବୋଲି କେହୁ ବୋଲୁଅାନ୍ତି ॥
ନଅ କଳାକୁ ଯେ କେହି ନିରାକାର ବୋଲି ।
କେହୁ ଭକ୍ତ ବୋଲନ୍ତି ଯେ ନନ୍ଦସୁତ ବୋଲି ॥
ଅକାର କଳା ଖିଳକୁ ଆଦି ମୂଳ କହି ।
ଅନନ୍ତ ମୂରତି ବୋଲି କେ ପୁଣ ବୋଲଇ ॥
ନଅ କଳା ଖିଳକୁ ସେ ନିର୍ଲେପ ବୋଲନ୍ତି ।
ମଳରେ ହି ସପ୍ତସ୍ୱରା ଏକଅଂଶ ହୋନ୍ତି ॥
ବାଳ ଯେ ମୁକୁନ୍ଦ ନାମ ବାଳରେ ହି ଜାଣି ।
ଦର୍ଶିନ୍‌ପୋକ ହୃଦୟରେ ଥାନ୍ତି ତେଣୁ ପୁଣି ॥
କେ ପୁଣ ତାହାଙ୍କୁ ଜୀବ ପରମ ବୋଲନ୍ତି ।
ଜୀବ ରାଧାକୃଷ୍ଣ ଯେ ପରମ ବେନ ମୂର୍ତ୍ତି ॥
କେ୍ୟାତିରାନନ୍ଦ ଯେ ପୁଣ ତାହାଙ୍କୁ କହନ୍ତି ।
ନଅ ଅଦ୍ୟ ନଅ କଳା ଯେଣୁ ସେ ଅଟନ୍ତି ॥
କେହି ତାହାଙ୍କୁ ବୋଲନ୍ତି ଜଗନ୍ନାଥ ପୁଣ ।
କେ ପୁଣ ତାହାଙ୍କୁ ବୋଲି ଜାନକୀ ପରାଣ ॥

ନଅକଳା ଥିଲାକୁ ସେ ନାରାୟଣ ବୋଲି ।
ନାମରୂପେ ପ୍ରକାଶିଣ ଘଟେ ଘଟେ ପୁରି ॥
ଉତ୍ତମ ମଧ୍ୟମ ଯେ କନିଷ୍ଠ ରୂପ ତିନି ।
ତିନି ପରକାରେ ଥାନ୍ତି ନେ ପାରିବେ ଚିହ୍ନି ॥
ଏ ରୂପ ଚିହ୍ନଇ ଯେହୁ ତାକୁ ବୋଲି ଗୁରୁ ।
ଶିଷ୍ୟକୁ ତାରନ୍ତି ପୁଣ ଏ ମାୟା ଧନ୍ଦାରୁ ॥
ମନ୍ତ୍ର ମୂର୍ତ୍ତି ଶିଷ୍ୟ ଯେ ଏମନ୍ତ ନ ବୁଝିଲେ ।
ଶୋଳପର ଶିଷ୍ୟ ଯେ ଭାସଇ ଭବଜଳେ ॥
ଏମନ୍ତ ମୂରତି ଦେଖି ଶିଷ୍ୟ ଯେବେ ମରେ ।
ମଲେଣ ମିଳଇ ଯାଇଁ ଶ୍ରୀପଦ୍ମ-ପଦ୍ମରେ ॥
ଇଚ୍ଛା ହେଲେ ଜନମ ସେ ଇଚ୍ଛାଏ ମରଣ ।
ଏ ରୂପକୁ ଲକ୍ଷ୍ୟ କରି ଥିବ ବାର ଜଣ ॥
ମୁକୁନ୍ଦ ଅନନ୍ତ ବସ୍ତ୍ର ଯାଦବ ସୁଦାମ ।
ଅନନ୍ତ ବାଲ ଗୋପାଳ ମଧ୍ୟରେ ଉତ୍ତମ ॥
ପୁଣ ସେ ସଂଶୟ ଆଉ ହେଉଛି ମନରେ ।
ମୁକୁନ୍ଦ ଅନନ୍ତକୁ ଯେ ଦୟା କରିବାରେ ॥
ମୁଖରୂପ ଆଜ୍ଞା ହେଲା ମନ୍ତ୍ର ଭେଦ କହ ।
ଅଣାକ୍ଷର ମନ୍ତ୍ର ଭେଦ ଫିଟୁ ମାୟାମୋହ ॥
ଶୁଣ ହୋ ମୁକୁନ୍ଦ ଦାସ ଏ ବଡ଼ ଗୁପତ ।
କୋଟିକେ ଗୋଟିଏ ଅବା ଜାଣିପାରେ ଭକ୍ତ ॥
ଅ ଅ ବେନି ଅକ୍ଷର ଯେ ପ୍ରାନ୍ତ ଅ ଅ ଧର ।
ଆ ଆ କ୍ଷର ଧରିବ ଯେ ଆକାର ମାତ୍ରାର ॥
ଉକାର ଅକ୍ଷର ଧର ଇକାର ମାତ୍ରାରେ ।
ଅକାର ଅକ୍ଷର ଧର ଗାର ମାତ୍ରାଠାରେ ॥
ଇକାର ଅକ୍ଷର ପୁଣି ଉକାରେ ବସଇ ।
ମୁଁ ଅ ତଳେ ଗୃହି ଅଂ ଉକାର ମାତ୍ରାହିଁ ॥

ଅକାର ଆଦ୍ୟରେ ପୁଣ ଅକାର ଧରିବେ ।
ସାତ ଅଙ୍କ ମାତ୍ରା ବାମ ପାରୁଶେ ବସିବ ॥
ଉ ଉ ଯେ ଅକ୍ଷର ପୁଣ ଉକାର ମାତ୍ରାରେ ।
ଏମନ୍ତ ବୋଲିଣ ଅଣାକ୍ଷର ମନ୍ତ୍ରାକ୍ଷରେ ॥
ପଞ୍ଚାକ୍ଷର ମଧ୍ୟରେ ଯେ ଅକାର ପଶିବ ।
ଅଣାକ୍ଷର ମନ୍ତ୍ରକୁ ଯେ ଏମନ୍ତ ବାନ୍ଧିବ ॥
ଯହିଁ ନାମ ଉଚ୍ଚାରିବେ ତହିଁରେ ମିଶଇ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ତହିଁ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ତିନିପୁର କଥା ।
ବାନ୍ଧ ଯେ ପାରିଲେ ତହିଁ ମିଳଇ ସର୍ବଥା ॥
ଯାହାକୁ ଛାଡ଼ିଲେ ଯେତୁ ଆସଇ ଯେ ପୁଣ ।
ଘଟେ ଘଟେ ପୂରିଅଛି ଶବଦ ରୂପେଣ ॥

ଏହି ମନ୍ତ୍ର ମୁଖୁ ଯେବେ ନିଷ୍ଠିଲେଣ ଥିବ ।
ରହାସ ଲୀଳା ଯେବଣ ସଂସାରୁ ତରିବ ॥
ପଞ୍ଚମେ ଗୋପାଳ ଆଉ ଗୋପକୂଳେ ବନ୍ଧ ।
ବିଷୟାଦି ଦ୍ୱନ୍ଦ୍ୱମାନ କେବଣେ ହେବ ଧନ୍ଧ ॥
ଏଣୁକରି ତୁମ୍ଭେ ତ ବିଷୟ ଛାଡ଼ି ଦେଲ ।
ତେଣୁକରି ତୁମ୍ଭେ ଯେ ପାଇଲ ମନ୍ତ୍ର ଭଲ ॥

ପ୍ରାତକାଳେ ସନ୍ଧ୍ୟାବେଳେ ପ୍ରଭାତେ ବସିବ ।
କ୍ଷଣେ ଦଣ୍ଡେ ନିଷ୍ଠିଲେ ଏ ରୂପ ଧ୍ୟାଉଥିବ ॥
ଶ୍ୱେତ ଯେ ଲୋହିତ ପୀତ ନୀଳବର୍ଣ୍ଣ କେଶାଦି ।
ଶ୍ୟାମଳ ସୁନ୍ଦର ରୂହି ପଞ୍ଚକଳା ସ୍ଥିତ ॥

ସି ଇ ଯେ ଇକାର କଳା ଧରି ଯେ ଆକାର ।
ଇ ଅ ଯେ ଉକାର କଳା ସ୍ତ ଉ ଯେ ଏକାର ॥
ଉକାର ଯେ ଆଦ୍ୟାକ୍ଷର ପଞ୍ଚମାତ୍ରା କହି ।
ପଞ୍ଚମ ଅକ୍ଷର ଦ୍ୱାର ମାତ୍ରା ଏ ହୁଅଇ ॥

ସି ଇ ଅଟେ ଶ୍ୟାମ ବେଦ ଧ୍ୱ ଇ ଯଜୁଃ ଜାଣି ।
ର ଅ ଅଟେ ଋକବେଦ ମ୍ଭ ଅଥର୍ବଣି ॥
ଅକାର ଯେ ଶିଶୁବେଦ ପାଞ୍ଚ ଏଣୁ ହୋଯ୍ୱେ ।
ଏ ପାଞ୍ଚ ବେଦରୁ ପୁଣ ସ୍ୱବାଣ କ୍ଷରଏ ॥
ସ୍ୱମାୟଣ ଭାରତ ଯେ ଭାରତୁଁ ପୁରାଣ ।
ପୁରାଣୁ କ୍ଷରେ ପୁଣ ନାନା ଗ୍ରନ୍ଥମାନ ॥
ଜାବ୍ୟଙ୍କୁ ସୁମୂର୍ତ୍ତିମାନ ତହୁଁ ଚଉତ୍ରିଶା ।
ଚଉତ୍ରିଶ ଅକ୍ଷରୁ ଯେ ପଦମାନ ମଣା ॥
ଏ ଯେତେ ଶବଦମାନ ତହିଁ ଯୋଜନ୍ତି ଜ୍ଞାନ ।
ଏ ଭେଦ ଜାଣନ୍ତି ଏକ ଏକ ସୁଜ୍ଞଜନ ॥
ଚଉଢଶା ଚଉପଦୀ ସୁମୂର୍ତ୍ତି ଶୋଳନ ।
ଖୋଲ କରତାଳେ ଘୋଷୁଥିବ ବାରଲୋକ ॥
ବ୍ରହ୍ମ କ୍ଷତ୍ରି ବୈଶ୍ୟ ଶୂଦ୍ର ସ୍ୱଜାତିମାନ ।
ଛତିଶ କୁଳ ଅଠର ପାଠକ ଯେ ଜନ ॥
ସବୁଙ୍କର ସ୍ଥାନେ ତୁମ୍ଭେ ମଙ୍ଗଳ କରିବ ।
ଗୋପାଳ କୁଳକୁ ତାରି ଆପଣେ ତରିବ ॥
ଅଚ୍ୟୁତ ବଚନ ଘେନ ବାର ବଇଷ୍ଣବ ।
ଗୁରୁଭକ୍ତ ଗୀତା ଏହୁ ଶାସ୍ତ୍ରରେ ଦୁର୍ଲ୍ଲଭ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତତ୍ତ୍ୱସ୍ୱଖଣ୍ଡେ ଯନ୍ତ୍ରମୂର୍ତ୍ତି
ଅଣାକ୍ଷର ମନ୍ତ୍ର-ମୂର୍ତ୍ତି କଥନେ ନାମ ପଞ୍ଚତ୍ରିଂଶ ପଟଳ ।

---

## ଷଟ୍‌ତ୍ରିଂଶ ପଟଳ

ଅନନ୍ତ ଗୋପର ତୃପ୍ତି ଘେନ ଗୁରୁଦେବ ।
ପ୍ରେମ ସ୍ୱଧାକୃଷ୍ଣ ଯେବେ ମନ୍ତ୍ର ଜ୍ଞାଳାଭାବ ॥
ଅନନ୍ତ ପଦ୍ମରେ ଯାହା ଶୁଣ ହେ ମୁକୁନ୍ଦ ।
ହଁ କ୍ଷଁ ଦୁଇକ୍ଷରେ ବେଜରୂପ ବନ୍ଧ ॥

ହ୍ର ଅ ଯେ ଅକ୍ଷର ପୁଣ ଆଦ୍ୟ ଯେ ଚରଣ ।
ହ୍ର ମଧ୍ୟେ ମାତ୍ରା ଅଟେ ବେନି ପାଦ ପୁଣ ॥
ହ୍ର ପରେ ସାତ ଅଙ୍କ ହୃଦ ସେ ଅଟଇ ।
ସାତ ଅଙ୍କପରେ ବିନ୍ଦୁ ଶିର ବୋଲି କହି ॥
କ୍ଷ ଯେ ଅକ୍ଷର ଅଟେ ରାଧାଙ୍କ ଚରଣ ।
ଆବର ପାଦ ଅଟଇ କ୍ଷ ର ଆଦ୍ୟ ଜାଣ ॥
ଇକାର ମାତ୍ରାକୁ ପୁଣ ହୃଦ ବୋଲି କହି ।
ଇକାର ଅକାର ପରେ ଶିର ବିନ୍ଦୁ ରହି ॥
କ୍ଷ ମାତ୍ରା ଗାରେ ମିଶି ହ୍ର ମଧ୍ୟେ ମିଶେ ।
ଏମନ୍ତେଣ ଦୁଇଭୁଜ ଦୁଇ ଅଙ୍ଗଦେଶେ ॥
ଭୁଜେ ଭୁଜ ଛନ୍ଦାଛନ୍ଦ ପ୍ରେମଭାବେ ରସ ।
ପ୍ରେମ ରାଧା ପ୍ରେମ କୃଷ୍ଣ ଏ ଭାବରେ ଦୃଶ୍ୟ ॥
ମୁକୁନ୍ଦ ପୁଣି ଜଣାଉଅଛୁ ପାଦତଳେ ।
ଏ ରୂପର ମନ୍ତ୍ର ପୁଣ କହିବା ପୁଚ୍ଛିଲେ ॥
ହେତୁ ମନେ ବିନ୍ଧ ଧର ମନ୍ତ୍ରର ବିସ୍ତର ।
ବାରଟିଆ ଦାସମାନେ ମନେ ଦୃଢ଼ କର ॥
ହ କାର ଅକ୍ଷରେ ପୁଣ ବସିବ ପ କାର ।
ତଥିପାଶେ ଏକାରକୁ ତାର ପରେ ଧର ॥
ଆବର ମାତ୍ରାକୁ ତଥି ପାଶରେ ଥୋଇବ ।
ଆବର ଯେ ହ ମାତ୍ରା ତଳରେ ରଖିବ ॥
ପଢ଼ିଲେ ଏମନ୍ତ ପୁଣ ଏକାକ୍ଷର ହୋଇବେ ।
ପାଞ୍ଚଗୋଟି ମାତ୍ରା ବସି ପଞ୍ଚାକ୍ଷର କହେ ॥
ଏହି ମନ୍ତ୍ର ସୁମତି ସ୍ୱରୂପ ଜ୍ଞାନ କର ।
ସର୍ବ ମନ୍ତ୍ର ପରେ ସାର ଅଟେ ଏ ଅକ୍ଷର ॥
ସବୁ ଯେ ଶବଦ ମିଳେ ହୃଦରେ ଭଜିଲେ ।
ଗୀତା ଭାଗବତେ ଏହି ମନ୍ତ୍ର ସାର କଲେ ॥

କେ ପୁଣ ତାହାଙ୍କୁ ବୋଲେ ହରି ଏ ଅଚ୍ୟୁତ ।
କେ ପୁଣ ଭଗତ ବୋଲେ ହୃଦପଦ୍ମ ମୂର୍ତ୍ତି ॥
କେ ପୁଣ ତାହାଙ୍କୁ ଚନ୍ଦ୍ର ଦୁର୍ବେଢ ହରନ୍ତି ।
ଏଣୁକରି ହରି ନାମ ସର୍ବ ସେ ସମ୍ପତ୍ତି ॥
ହରିନାମ ଧରିଥିଲେ ହୋଇବ ସମ୍ପଦ ।
ହରି ଆଶ୍ରେ ଜନକୁ କଳ୍ପିତ ଇନ୍ଦ୍ର ପଦ ॥
ହରିନାମ ଅଶ୍ରେ କରି ଭୁଷଣ୍ଡି ଅମର ।
ହରିନାମ ଧରି ବିଭୀଷଣ ଯୁଗାନ୍ତର ॥
ହରିନାମ ଧରି ହନୁ ଲଙ୍କା ଜୟ କଲା ।
ସେହୁ ଭକ୍ତେ ହରିନାମ ଭଜୁଁ ସେ ତରିଲା ॥
ସୁହାସ ଚରିତ ଲୀଳା ହରିରେ ସଙ୍ଗୀତ ।
ତୁମ୍ଭେ ଯେ ବଣିକ କରି ତରିବ ଜଗତ ॥
ତୁମ୍ଭେ ମୂଳବୃକ୍ଷ ହୁଅ ପୁନି ନାଥ ଜଳ ।
ତୁମ୍ଭଲାଗି ଉଦ୍ଧାର ହୋଇବେ ଗୋପକୁଳ ॥
ସେନ ଅଚ୍ୟୁତର କଥା ମନେ ହେତୁକର ।
ଦ୍ୱାଦଶ ଗୋପାଳ ତୁମ୍ଭେ ଗୋପକୁଳେ ସାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ଏକାକ୍ଷର
ମନ୍ତ୍ରମୂର୍ତ୍ତିକଥନେ ନାମ ଷଡ୍‌ବିଂଶ ପଟଳ ।

———

## ସପ୍ତବିଂଶ ପଟଳ

ମୁକୁନ୍ଦ ଦାସର ମନ ସଂଶୟ ଫେଡ଼ିବା ।
ଶ୍ରୀରାମ ମୂରତି ରୂପ ତନ୍ତ୍ରରେ ବନ୍ଧିବା । ୧ ।
ଭଲ ସନ୍ଧି ପଚ୍ଛର ହେ ମୁକୁନ୍ଦ ଅନନ୍ତ ।
ନୋହିଲେ କି ଗୋପସ୍ଥରେ ତୁମ୍ଭେ ଭାଗ୍ୟବନ୍ତ ॥
କହିବା ଯନ୍ତ୍ରର ମୂର୍ତ୍ତି ଏକ ମନେ ଘେନ ।
ତୁମ୍ଭେ ବାରଜଣ ଅଟ ରାହାସେ ପ୍ରଧାନ ॥
ଆନବେଳେ ଏ କଥା କି ପଚ୍ଛିର ହୁଅଇ ।
ଆନକୁ ରହାସ ଲୀଳା ମିଳିବ ବା କାହିଁ ॥
ହୃଦି ଷଡ଼ି ତଳରେ ଏ ଅର୍ଦ୍ଧମାତ୍ରା ବସେ ।
ଅର୍ଦ୍ଧମାତ୍ରା ମଧ୍ୟେ ଏକ ଗାର ପରକାଶେ ॥
ଅର୍ଦ୍ଧେ ଅର୍ଦ୍ଧେ ବେନଭାଗ ଅର୍ଦ୍ଧମାତ୍ରା କହି ।
ଅର୍ଦ୍ଧେ ରାମ ମୂର୍ତ୍ତି ଯେ ଅର୍ଦ୍ଧେ ସୀତା ହୋଇ ॥
ନ ର ଯେ ଆଦ୍ୟ କଳା ବାମରେ ବସିବ ।
ଗାରଠାରୁ କେତେ ଖର ଗ୍ରନ୍ଥିକରି ଦେବ ॥
ପ ଅର ଯେ ଆଦ୍ୟ କଳା ବାମରେ ବସିବ ।
ଏ ମନ୍ତ୍ରେଣ ଶବ୍ଦେ ଗୁରୁ ଅକ୍ଷର ହୋଇବ ॥
ତାରକ ମନ୍ତ୍ର ଏ ଏଥି ବନ୍ଧିଲେଟି ପାଇ ।
ସଦଗୁରୁ ସେବିଲେ ଯେ ସୁଶିଷ୍ୟ ଜାଣଇ ॥
କୁବୁଦ୍ଧି ସେବକମାନେ ନ ପୁଚ୍ଛନ୍ତି ଏହା ।
ଗୁରୁଙ୍କୁ ନ ପୁଚ୍ଛି ହୋନ୍ତି କୁଟୁମ୍ବେ ମୂରୁହା । ୧୦ ।
କୁଟୁମ୍ବ ମେଳେହେଁ ଶିଷ୍ୟ ଏ ଭେଦ ନ ପାଏ ।
ଗୁରୁ ସେବା କଲି ଶିଷ୍ୟ ଏହି ମନ୍ତ୍ର ଧ୍ୟାୟେ ॥

---

୧-୨— ଯନ୍ତ୍ରରେ (ଖ, ଗ)

ଆବର କଥାଏ ଶୁଣ ମୁକୁନ୍ଦ ଅନନ୍ତ
ସବୁ ଗୁରୁ କହି ନ ପାରନ୍ତି ଏହି ତତ୍ତ୍ୱ ॥
ଜାତସ୍ମର ଗୁରୁମାନେ ଏ ଭେଦ ଜାଣନ୍ତି ।
ମାନବ ଜନମ ଗୁରୁ ଏ ଭେଦ ନ ପାନ୍ତି ॥
ଏ ଯେ ଯନ୍ତ୍ର ମୂର୍ତ୍ତି ଗୁଣ ଅନନ୍ତ ମୁକୁନ୍ଦ ।
ଯନ୍ତ୍ର ମୂର୍ତ୍ତି କହିବା ହେ ମନେ ଘେନ ବାନ୍ଧ ॥
ନଅ କଳା ଅଟଇ ଯେ ବେଦ ଯେ ଚରଣ ।
ତଥିପରେ ହୃଦ ଶିର ମୁଖ ଭୁଜ ପୁଣ ॥
ପ ଆଦ୍ୟ କଳା ଅଟେ ହୃଦସୃଷ୍ଟି ଜାଣ ।
ପ ତଳେ ବର୍ଣ୍ଣବନ୍ଧି ଏ ବେଦ ଚରଣ ॥
ତଥିପରେ ହୃଦ ଶିର ନୟନ ନାସିକା ।
ଏଣୁକରି ପ କଳା ସୀତସ୍ୱାର ପନା ॥
ନଅ କଳା ସ୍ୱମ ମୂର୍ତ୍ତି ନାରାୟଣ କହି ।
କେ ପୁଣ ତାହାକୁ ନରହରି ଯେ ବୋଲଇ ॥
ଅନନ୍ତ ମୂରତି ରୂପ ଧରିଣ ପ୍ରକାଶ ।
ଥାନେ ଥାନେ ଲୀଳା ତାଙ୍କ ଅଟେ ପ୍ରେମରୂପ ॥
ନଅକଳା ଅଟଇ ଯେ ଆ ଯେ ଅକ୍ଷର ।
ଆତ୍ମା ବୋଲି ଅକ୍ଷର ଯେ ନଅରୁ ସଞ୍ଚାର । ୧୦ ।
ଋ ଯେ ଅକ୍ଷର ପୁଣ ସବୁ କ୍ଷରଇ ।
ମ ଯେ ଅକ୍ଷର ପୁଣ ନଅ କଳା ହୋଇ ॥

---

୧୦—କ୍ଷ—

ମୁକୁନ୍ଦ ଧରମୁ ପୁଣ ପଚ୍ଛରୁ କଥାଏ ।
ଏ ରୂପର ମନ୍ତ୍ର ପୁଣ କେମନ୍ତେଣ ହୋଏ ॥
ମନ୍ତ୍ର ଭେଦ ଶୁଣ ତୁମ୍ଭେ ହେରୁ କରି ମନ ।
ଅନନ୍ତ ଦାସ ହେ ଶୁଣ ମୁକୁନ୍ଦ ସୁଜନ ॥

ଏଣୁକରି ପରମ ଆତ୍ମା ଯେ ତାକୁ କହି ।
ତତ୍ତ୍ୱ ନିରଞ୍ଜନ ବୋଲି କେ ପୁଣ ଗୁଣଇ ॥
କେ ବୋଲଇ କେଶୀଘାଟ ଗ୍ରାମ ଅଟନ୍ତି ଏ ପୁଣ ।
କେ ବୋଲି ଅକେଶୀଘାଟ ରୂପ ଅଟନ୍ତି ଏ ଜାଣ ॥
କେ ବୋଲନ୍ତି ଗଡ ଗ୍ରାମ ଗୁଣିଲେ ମୁକତି ।
କେ ବୋଲଇ କାଶୀ କ୍ଷେତ୍ର ବାରାଣସୀ ସ୍ଥିତି ॥
ଏମନ୍ତ ମୂରତି ରୂପ ହୃଦେ ସୁମରିବ ।
ସୁସେବକମାନଙ୍କୁ ଯେ ଏ ଭେଦ କହିବ ॥
ଅପଣ୍ଡା ଶିଷ୍ୟ ଏ ଭେଦ ନ ପଚାରେ ପୁଣି ।
କୁଟୁମ୍ବ ଧନ ପଣରେ ଭ୍ରମଇ ନ ଜାଣି ॥
ଧନ ପ୍ରାଣ କୁଟୁମ୍ବ ଛାଡ଼ିଲ ତୁମ୍ଭେ ବାର ।
ସବୁ ଧନ ପଣ କଲ ଶ୍ରୀଗୁରୁ ପୟର ॥
ଏଣୁକରି ମନ୍ତ୍ରମୂର୍ତ୍ତି ପାଇଲ ଦର୍ଶନ ।
ଏହି ଗ୍ରନ୍ଥ ଭକତମାନଙ୍କୁ ଚକ୍ଷୁ ଦାନ ॥
ଦୀନ ଅଚ୍ୟୁତର କଥା ମନେ ଘେନିଥିବ ।
ଗୁରୁଭକ୍ତି ଗୀତା ତୁମ୍ଭେ ନିରତେ ପଢ଼ିବ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କୃଷ୍ଣସୁଖଣ୍ଡେ ତାରକ-
ମନ୍ତ୍ର-ମୂର୍ତ୍ତି ଦର୍ଶନେ ନାମ ସପ୍ତତ୍ରିଂଶ ପଟଳ ॥

---

## ଅଷ୍ଟତ୍ରିଂଶ ପଟଳ

ମୁକୁନ୍ଦ ଅନନ୍ତ ବସ୍ତ୍ର ସୁଦାମ ଗୋବିନ୍ଦ ।
ପବନ ଉଦ୍ଧାନ ବୃନ୍ଦାବନ ଯେ ଆନନ୍ଦ ॥
ବାଳକ ମଥୁରି ଯାହା ଅଛି ଯେ ପଚାରି ।
କହିବା ଏଥିର କଥା ପାରି ଯେବେ ଧରି ॥

ହ୍ରଉଁ କ୍ଷଉଁ ମଧ୍ୟରେ ଯେଉଁ ଗାର ଅଛଇ ।
ଅର୍ଦ୍ଧମାତ୍ରା ମଧ୍ୟେ ରହେ ଓଁକାର ଯେ ତହିଁ ॥
ଗାର ପାଶେ ହ୍ର କ୍ଷର ବସାଇବ ପୁଣ ।
ଦ ଯେ ବସିଲେ ହେବ କକାରଟି ଜାଣ ॥
ଗାର ଏକପାଦ ହୁଏ ବନ୍ଧଣ ପାଖଲେ ।
ଦ ଗାର ଆର ପାଦ ଚରଣ ବନ୍ଧଲେ ॥
ଆବର ଯେ ଇକାର ହୃଦସ୍ଥ ପୁଣ ହୋଇ ।
ନାଦବିନ୍ଦୁ ଶିର ବୋଲି ଗୁରୁ ଦୀନ୍ତ କହ ॥
ଧ ଈକାର ଅଟଇ ଭୁଜ ଲକାରଟି କାଟି ।
ଏ ରୂପକୁ ରସିକ ଭରତ ଥାନ୍ତି ଖଟି ॥
ଏଣୁ ସେ କ୍ଲୀଁ ଅକ୍ଷର କାମ ବୀଜ କହୁ ।
ଗାରରୁ ପଞ୍ଚରେ ପୁଣି ଏତେ କଳା ତହିଁ ॥
ଶୁଦ୍ଧ ରାଧା ଶୁଦ୍ଧ କୃଷ୍ଣ ଅଟନ୍ତି ଏ ପୁଣ ।
ଷୋଳ ସସ୍ର ଗୋପୀ ଏହୁ ଅଙ୍ଗୁ ଜାତ ଜାଣ ॥
ଆବର ଷୋଳ ସହସ୍ର ଗୋପାଳ ଜନମ ।
ଷୋହଳ ସସ୍ର ଅନନ୍ତ ଗୋପଗୋପୀ ଜାଣ । ୧୦ ।

କଳଉଁ ଅକ୍ଷର ପୁଣ ଏମନ୍ତ ସେ ଧର ।
ଲକାର ଯେ ରାଧା ବୋଲି ସୁମରଣା କର ॥
ଇକାର ନାମ ଧରିଲେ ପଞ୍ଚାକ୍ଷର ହୁଏ ।
ଶ୍ୟାମ ପଞ୍ଚାକ୍ଷର ସଦଗୁରୁ ଶିଷ୍ୟ କହେ ॥
ଏହୁ ରୂପ ଧ୍ୟାନ କରି ରହାସେ ମିଶିବ ।
ଜନ୍ମେ ଜନ୍ମେ ପାଦପଦ୍ମେ ସେବା କରିଥିବ ॥

ଯୁଗ ଶେଷେ ପ୍ରଳେ ହେଲେ ପାଦେ ନମସ୍କରିବ ।
ଅବତାର ରୂପ ଯେନି ଲୀଳା କରୁଥିବ ॥
ସତ୍ୟ ଯୁଗେ ଋଷି ସଙ୍ଗେ ପୁରାଣ ପଠନ ।
ତ୍ରେତୟା ଯୁଗରେ କଲି ଯଜ୍ଞ ବର୍ଦ୍ଧମାନ ॥

ଦ୍ୱାପର ଯୁଗରେ କଲ ରାହାସ ବନ୍ଦନ ।
କଳିଯୁଗେ ସଂକୀର୍ତ୍ତନେ ରାହାସ କୀର୍ତ୍ତନ ॥
ପୁଣ ସେ ସତ୍ୟ କଳିରେ ରାଗ ବନ୍ଧଗୀତ ।
ବିବିଧ ଯନ୍ତ୍ର ମିଶିଣ ରାଜବିଧି ମତ ॥
ଅବତାର ମୂର୍ତ୍ତି ସଙ୍ଗେ ଯୁଗେ ଯୁଗେ ଖେଳା ।
ଏଣୁକରି ରାହାସ ଲୀଳାକୁ କର ଭେଳା ॥
ସତ୍ୟଯୁଗେ ଭଗବାନ ତ୍ରେତାଯୁଗେ ରାମ ।
ଦ୍ୱାପରେ ଜନମ ହେଲେ କୃଷ୍ଣ ବଳରାମ ॥
ଶ୍ରୀଚୈତନ୍ୟ ନିତ୍ୟାନନ୍ଦ କଳିଯୁଗେ ସାର ।
ଜଗନ୍ନାଥ ରୂପ ଧାଇ ରାସଲୀଳା କର ।୨୦।
ପୁଣ ଯେ କଳଙ୍କି ସଙ୍ଗେ କରିବ ଗାୟନ ।
ଛତିଶ ରାଗେଣ ଛଅ ରାଗ ଗୀତମାନ ॥
ଖୋଳ କରତାଳ ବୀଣା ସାରଙ୍ଗ ଅମୃତ ।
ତାଳ ଯେ ମୃଦଙ୍ଗ ତମ୍ବ ସମ୍ବର ସଙ୍ଗୀତ ॥
ସଂଶୟ ରହିଲା ଗୁରୁ ରାଧାରୂପେ ପୁଣ ।
ଲକାର କେମନ୍ତେ ବସେ କ୍ଲୀଁ ଠାରେ ପୁଣ ॥
ଅଶ୍ରୁ ଛଳଛଳ ହୋଇ କୋଳାଗ୍ରତ କରି ।
ବିଷମସନ୍ଧି ପଗ୍ୱର ମୁକୁନ୍ଦ ମୁରାରି ॥
କହିବା ଅନନ୍ତ ଶୁଣ ଲକାର ବିଗ୍ୱର ।
କରପ୍ରାନ୍ତେ ବସିବ ଲକାର ମଧ୍ୟର ।୨୧।
ଲକାର ଆଦ୍ୟ କଳା ଯେ କଅପ୍ରାନ୍ତେ ବସେ ।
ରାଧାକୃଷ୍ଣ ପ୍ରେମଲୀଳା ଏହିରୂପେ ମିଶେ ।୨୨।

---

୨୧-ଖ – ଗ୍ରହିଲେ ଚତୁର୍ଦ୍ଧା ରୂପଗୋଟି ଶୋଭା ଦିଶେ ।
ଲକାର ପ୍ରାନ୍ତର କଳା ଗାର ଆର ପାଶେ ॥
ଲକାର ତଳକୁ ପୁଣ ପାଦ ବେକ ହୋଏ ।
ଲକାର ଉପରେ ପୁଣ ଶିରବିନ୍ଦେ ଶୋହେ ॥

ଅଚ୍ୟୁତ ବଚନ ଏ ଯେ ଅଟେ ନିରାଧାର ।
ବହିଲେ ଏ ଭବାର୍ଣ୍ଣବ ସିନ୍ଧୁ ହେବ ପାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଚତୁର୍ଥଖଣ୍ଡେ
ରାଧାରୂପ ବର୍ଣ୍ଣନ ମନ୍ତ୍ରଭେଦକଥନେ
ନାମ ଅଷ୍ଟତ୍ରିଂଶ ପଟଳ ।

---

## ଊନଚତ୍ୱାରିଂଶ ପଟଳ

ଶ୍ରୀଗୁରୁ ପରମ ଯେ ଗୁରୁ । କରୁଣା କର ମହାମେରୁ ॥
କେଉଁ ଗୋପାଳ କେଉଁ ନାମ । ଭକତନ୍ତ ମନରେ ଉତ୍ତମ ॥
ଚଉଶ ଗୋପାଳ ହେ ଶୁଣ । ରାମ ମୁକୁନ୍ଦ ହୃଦେ ଗୁଣ ॥
ଭରତ ଅନନ୍ତ ହେ ବନ୍ଦ । ବିଷ୍ଣୁ ଧରମୁ ହେ ବିବେକ ॥
ଅଠର ଅକ୍ଷର ଯେ ନାମ । ଗୋପାଳ ମନ୍ତ୍ର ଏ ଉତ୍ତମ ॥

---

ଏମନ୍ତ୍ରେଣ ଦୃଢରୂପ ଧ୍ୟାନ କରୁଥିବ ।
ଉତ୍ତମ ଶିଷ୍ୟଙ୍କୁ ଏହା ଗୁପତେ କହିବ ॥
ଲକାର ପ୍ରାନ୍ତ କଳାରେ ରାଧା ବେଦାକ୍ଷର ।
ଏହି ମନ୍ତ୍ର ମୂର୍ତ୍ତି ଧର ବାର ହେ ଗୋପାଳ ॥
ଅଚ୍ୟୁତ ବଚନ ଧର ବାର ପାଞ୍ଚଦାସ ।
ଚଉଶ ଗୋପାଳ ଘୋଷ ଗୁରୁଭକ୍ତ ରସ ॥
୧୭-ଗ—ନିର୍ଗୁଣ ମନ୍ତ୍ର ଯେ ବାରୁ ନ କହିବ ଆନେ ।
କହିଲେ ଶାପ ପାଇବ ଅନ୍ନବସ୍ତ୍ର ହାନେ ॥
ଅଚ୍ୟୁତ ବଚନ ବାର ଜଣ ପାଳିଥିବ ।
ଅମାନନା କଲେ ଭ୍ରଷ୍ଟ ନଷ୍ଟେ ନାଶଯିବ ॥

ଏକ ଅକ୍ଷରେ ଏକରୂପ । ମନ୍ତ୍ରରେ ହୋଇଅଛୁ ଗୋପ୍ୟ ॥
ଓଁ କାର ଅକ୍ଷର ଯେ ମୂଳ । ରାଧା କୃଷ୍ଣଙ୍କ ତହିଁ ଅଳ ॥
ଓଁ କାର କୃଷ୍ଣରୂପ ହୋଇ । ଅର୍ଦ୍ଧମାତ୍ରା ଯେ ରାଧା ଦେହି ॥
ଓମଡ଼ ଆଦ୍ୟ ବଳଦେବ । ରେବତୀ ତହୁଁ ଅର୍ଦ୍ଧ ହେବ ॥
ଏମନ୍ତେ ବୃନ୍ଦରୂପ ଜାଣ । ତହୁଁ ଜନମ ଗୋପଗଣ ॥
କ୍ଲୀଁ ଅକ୍ଷର କୃଷ୍ଣ କହି । କ୍ଷୀଅ ଯେ ସୁଦାମ ଅଟଇ ॥
ସ୍ୱ ଅକ୍ଷର ଦାମ ଜାଣ । ଗୋ ଯେ ଦାମ ଶୀଖା ପୁଣ ॥
ବ କାର ଶ୍ରୀବତ୍ସକି କହି । ଦାଆଁ ପାର୍ଶ୍ୱିକ ପୁଣ ହୋଇ ॥
ସ୍ୱ ଅକ୍ରୂର ବୋଲି ଜାଣ । ଗୋ ଉଦ୍ଧବ ଯେ ପ୍ରମାଣ ॥
ପୀ କାର ବନ୍ଧୁର କି କହି । ଜ ଯେ ସଂଜୟ ଅଟଇ ॥
ନଅ ଯାଦବ ବୋଲି ଜାଣ । ବ ବସୁନନ୍ଦ ବୋଲିଣ ॥
ଲ କୁ ବୃନ୍ଦନନ୍ଦ କହି । କୃଷ୍ଣର ବାର ଶାଖା ଏହି ॥
ବଳଭଦ୍ର ଯେ ଗୁରୁକ୍ଷର । ସୁବଳ ସ୍ୱ ଯେ ଅକ୍ଷର ॥
ସୁରଥ ସ୍ୱ ଅକ୍ଷର ହୋଇ । ନ ନାମ ଲୋକପାଳ ବହି ॥
ମ ଯେ ଧର୍ମନନ୍ଦ ପୁଣ । ରାମ ଶାଖା ଏ ଚାରିଜଣ ॥
ଏମନ୍ତେ ଅଟେ ଷୋଳଜଣ । ଗୋପାଳ ଅକ୍ଷର ପ୍ରମାଣ ॥
ରାମ କୃଷ୍ଣ ମିଶି ଅଠର । ଏ ଶାଖା-ଗଣ ଚବିଶର ॥
ଏକ ଶାଖାକେ ଷୋଳ ସହ । ଯୂଥ ମିଳଣ ହୋନ୍ତି ମିଶ୍ର ॥
ଭୁମ୍ଭେ ଚବିଶ ଗୋପଜନ । ଏହି ମନ୍ତ୍ରକୁ କର ଧ୍ୟାନ ॥
ସ୍ୱ କୁ ମୁକୁନ୍ଦ ହେ ଧର । ଗୋ କୁ ଅନନ୍ତ ସୁମର ॥
ବ କ ରାମଚନ୍ଦ୍ର ଧର । ନା କୁ ଭରଥ ସୁମର ॥
ସ୍ୱ କୁ ଚକ୍ରଧର ମନ । ଧରମ ଗୋ ଅକ୍ଷରେ ଧ୍ୟାନ ॥
ପୀ କାର ଵଷ୍ଣୁ ହେବୁ କର । ଜ କୁ ଦକ୍ଷିଣ ସୁମର ॥
ନ କୁ ମଧୁସ୍ୱ ହେ ଧର । ଜ କୁ ପବନ ସୁମର ॥
ଜ କୁ ଉତ୍ଥାନ ଗୁଣିବ । ଗୋପାଳ ମନ୍ତ୍ର ସୁମରିବ ॥
ଲ୍ଲ ଯେ ଆନନ୍ଦ ଭଜନ । ସ୍ୱ ଗୋବିନ୍ଦ କରେ ଧ୍ୟାନ ॥

ନ କୁ ବସ୍ତ୍ର ସୁମରିବ । ମ କୁ ବାଳକ ଧରିବ ॥
ସ୍ୱେମନ୍ତେ ଷୋଳ ଯେ ଅକ୍ଷର । ପଞ୍ଚ ଶାଖା ଯେ ମନେ ଧର ॥
ବାରକ୍ଷିଆ ଯେ ଦାସମାନେ । ଏ ରସ ଧରି ଗୁଣ ମନେ ॥
ମନ୍ତ୍ରକୁ ରସ ଗୁଣ କହି । ରସକୁ ପ୍ରାଣୀ ରସି ରହି ॥
ସଗୁଣେ ସବ ମନ ପଶେ । ନିର୍ଗୁଣେ ଏକ ଏକ ରସେ ॥
ସହସ୍ର ଜଣେ ଏକ ଜଣ । ନିର୍ଗୁଣେ ପଶିପାରେ ପୁଣ ॥
ସଗୁଣ ନିର୍ଗୁଣ ଏ ଦେହି । ଯେ ସାଧିପାରେ ମନ ଦେଇ ॥
ସଗୁଣ ନିର୍ଗୁଣେ ନ ଜାଣେ । ଭ୍ରମନ୍ତି ଶାସ୍ତ୍ରର ଶ୍ରବଣେ ॥
ଏ ରସ ଗୁଣକୁ ତୁ ଶିଖ । ଗୃହାସ ଗୁଣିବା ଗଠକ ॥
ସଗୁଣ ସଂସାରେ କହିବ । ନିର୍ଗୁଣ ଗୁପତେ ଭଜିବ ॥
କୋଟିକେ ଗୋଟିଏ ଶିଷ୍ୟରେ । କହିବ ମନ ସେବାଦ୍ୱାରେ ॥
ମୁକୁନ୍ଦ ଅନନ୍ତ ମଥୁରି । ଅଚ୍ୟୁତ ଆଜ୍ଞା ଥିବ ଧରି ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ
ଗୋପାଳ ମନ୍ତ୍ର ଶାଖାଗଣ ଧ୍ୟାନ ସ୍ମରଣେ
ନାମ ଊନଚତ୍ୱାରିଂଶ ପଟଳ ।



## ଚତ୍ୱାରିଂଶ ପଟଳ

ଆଜ୍ଞା ଯେ ଦେବ ଗୁରୁଦେବ । ସଖୀ ଜନମ କେଉଁ ଭାବ ॥
ଶୁଣ ଅନନ୍ତ ହେ ମୁକୁନ୍ଦ । କହିବା ଗୋପୀଙ୍କ ବିନୋଦ ॥
କୃଷ୍ଣଙ୍କ ସଙ୍ଗେ ରାଧା ଭାବ । ବିନୋଦ ଲୀଳା ସୁଖ ଭୋଗ ॥
ଦାମ ଶ୍ରୀମତୀ ସଙ୍ଗେ ଲୀଳା । ଗୋପ ନଗରେ କରେ ଖେଳା ॥
ସୁଦାମ ସଖା ସଙ୍ଗେ ପୁଣ । ସୁରେଖା ସାଙ୍ଗରେ ମିଳଣ ॥
ଦାମ ସଖାର ଶୁଣ ରସ । ହରି-ପ୍ରିୟାର ଖେଳ ରସ ॥
ସୁଗନ୍ଧା ସଖୀ ସଙ୍ଗେ ମିଳି । ଶ୍ରୀବତ୍ସ କରେ ରସ କେଳି ॥
ବନ ଯେ ତରଙ୍ଗିଣୀ ସଙ୍ଗ । ସାତ୍ତ୍ୱିକା କରେ ଖେଳ ରଙ୍ଗ ॥
ମଧୁବନ୍ତୀ ସଙ୍ଗତେ ମିଳି । ଅକ୍ରୂର କରେ ରସ କେଳି ॥

ପ୍ରିୟା ସଙ୍ଗରେ ରସ ଭାବ । ସେ ସଙ୍ଗେ ଖେଳଇ ଉଦ୍ଧବ ॥
ସୁପ୍ରିୟା ସଙ୍ଗେ ରସମାନ । ତା ସଙ୍ଗେ ବନ୍ଧୁର ମିଳନ ॥
ସୁରେଖା ସଙ୍ଗେଣ ସନ୍ତୁଷ୍ଟେ । ବିନୋଦ ରସ ଲୀଳା ହୁଏ ॥
ଶଶୀରେଖା ସଙ୍ଗତେ ପୁଣ । ଯାଦବ କରେ ଲୀଳା ଜାଣ ॥
ସୁନନ୍ଦ ଲୀଳାବତୀ ସଙ୍ଗେ । ଲୀଳା କରନ୍ତି ନାନାରଙ୍ଗେ ॥
ମାଳତୀ ସଖୀ ସଙ୍ଗେ ଭାବ । ଭାବ କରଇ ବୃନ୍ଦ ନନ୍ଦ ॥
ସୁବଳ ମାଳତୀ ସଙ୍ଗେଣ । ଲୀଳା କରନ୍ତି ଯେ ମିଳଣ ॥
ସେବତୀ ସଖୀ ସଙ୍ଗେ ରସ । ସୁରଥ ମିଳଣ ହରଷ ॥
ମରୁଆ ସଖୀ ସଙ୍ଗେ ମିଳି । ଲୋକପାଳ ଯେ କରେ କେଳି ॥
ଦୟଣା ସଖୀ ସଙ୍ଗେ ରଙ୍ଗ । ଧରମାନନ୍ଦ ଯେ ଖେଳଇ ॥
ରେବତୀ ସଙ୍ଗେ ବଳଦେବ । ଲୀଳା ଯେ ଯୁଗଳରେ ଭାବ ॥
ଏମନ୍ତେ ଅଷ୍ଟାଦଶ ଗୋପୀ । ବୃନ୍ଦାବନରେ ଲୀଳା ସ୍ଥାପି ॥
ରାଧା ଅଙ୍ଗରୁ ଗୋପୀଗଣ । ରେବତୀ ଜନମ ଯେ ପୁଣ ॥
ରେବତୀଠାରୁ ଷୋଳ ଗୋପୀ । ଷୋଳ ସହସ୍ର ଗୋପୀ ବ୍ୟାପୀ ॥
ଗୋପୀ ଗୋଟିକେ ଷୋଳ ସସ୍ର । ଗୋପାଳ କରନ୍ତି ରାହାସ ॥
ସହସ୍ର ସହସ୍ର ହୋଇଲେ । ଗୋପୀ ଗୋପାଳ ଲୀଳା କଲେ ॥
ବଳଦେବ ଅଙ୍ଗରୁ ଜାତ । ଗୋପାଳ ହୋଇଲେ ସମୂତ ॥
ଏଣୁ ଅନନ୍ତ ଅଙ୍ଗ ସାର । ଅନନ୍ତ ଗୋପାଳ ସୁମର ॥
ଅନନ୍ତ ମୂଳେ ଗୋପ ପୋଏ । ରେବତୀ ମୂଳେ ଗୋପୀ ଥାଏ ॥
ଏଣୁଟି ମନ୍ତ୍ର ହରେ ଅଙ୍ଗ । ଭଜନ କରନ୍ତି ବୈରାଗ୍ୟ ॥
ପଛେଣ କୃଷ୍ଣ ନାମ ଧଣ । ତୃତୀୟେ ରାମ ଯେ ସୁମଣ ॥
ଚତୁର୍ଥେ ପୁଣ ହରେ ଜପ । ଲେଉଟ ପାଲଟ ରେ ବାପ ॥
ହରେ ରାମରେ ବଳଦେବ । ରେବତୀ ହରେ ନାମେ ଠାବ ॥
କୃଷ୍ଣର ନାମେ ରାଧା ରହେ । ରାମ ନାମରେ ରାଧା ଥାଏ ॥
ରାମ ନାମରେ ଯେ ରେବତୀ । ରାମ ନାମରେ ରାଧା ଛନ୍ତି ॥
ହରେ କୃଷ୍ଣ ଯେ ରାମ ତନ । ଭଜନ୍ତି ସାଧୁ ସନ୍ଥ ମୁନ ॥
ହରେ ରାମ କୃଷ୍ଣ ଯେ ସାର । କଳିରେ ଚୈତନ୍ୟ ଠାକୁର ॥

ଉକ୍ତ ନାମକୁ ସାର କଲେ । ଢେର ନାମକୁ ଲୁଚ୍ଛାଇଲେ ॥
ହରେ ରାମକୁ ହରେ କୃଷ୍ଣ । ମନ୍ତ୍ରକୁ କଲେକ ଯତନ ॥
ରସ ଗୁଣକୁ ବୁଝାଇଲେ । ନିର୍ଗୁଣ ରସ ଲୁଚ୍ଛାଇଲେ ॥
ନୀଳାଚଳରେ ନିର୍ଗୁଣ । କହିଲେ ସ୍ୱରୂପ ଭେଟଣ ॥
କହିଲେ ଜଗନ୍ନାଥ ଦାସ । ଗୁପତେ ନିର୍ଗୁଣ ପ୍ରକାଶ ॥
ଭଗବାନ ଯେ ଦାସ କହି । ଯଶୋବନକୁ କୃପା ବହି ॥
ଶିଶୁ ଦାସକୁ ଯେ କହିଲେ । ଅଚ୍ୟୁତ ମତେ ବୁଝାଇଲେ ॥
ଭଇର୍ଦ୍ଦାସକୁ କହିଲେ । ବଳରାମ ଦାସ ଜାଣିଲେ ॥
ଏତେ ଭକତଙ୍କୁ ଗୁପତେ । କହିଲେ ଚୈତନ୍ୟ ଏକାନ୍ତେ ॥
ଚଉଷ ଗୋପ ପୋଏ ଶୁଣ । ଅଚ୍ୟୁତ ରସ ଏ ପ୍ରମାଣ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଭୂତାସ୍ୱଖଣ୍ଡେ
ସଖୀ ସଖାମାନଙ୍କ ଲୀଳାକଥନେ
ନାମ ଚତ୍ୱାରିଂଶ ପଟଳ ।

———

## ଏକଚତ୍ୱାରିଂଶ ପଟଳ

ମୁକୁନ୍ଦ ଅନନ୍ତ ଆନନ୍ଦ । ପବନ ବସ୍ତ୍ର ଯେ ଗୋବିନ୍ଦ ॥
ବାଳକ ଦାସ ଯେ ପୁଚ୍ଛଇ । ମଣୋହି କେଉଁ ମନ୍ତ୍ରେ ହୋଇ ॥
ଶୁଣ ହେ ଅମଣିଆ ଦାସ । କହିବା ମନ୍ତ୍ର ଉପଦେଶ ॥
କ୍ଲୀଁ ବୀଜ ଯେ ଯାହା କହି । ସେ ପୁଣ କୃଷ୍ଣ ଯେ ଅଟଇ ॥
ଗୋବିନ୍ଦାୟ ଯେ ମୁଖ ଜାଣ । ଗୋପୀଜନ ଯେ ଶିର ପୁଣ ॥
ବଲ୍ଲଭାୟ ଯେ କଟି ହୋଇ । ନମଃ ଯେ ଅଟେ ପାଦ ଦୁଇ ॥
ଗୋବିନ୍ଦାୟ ନୟନ ଦୁଇ । ଗୋପୀଜନ ନାସିକା କହି ॥
ବ ଯେ ହୃଦ ବୋଲି ଜାଣ । ଲ ଯେ ନାଭି ପରମାଣ ॥
ଭଆ ଯେ କଟି ବୋଲି କହି । ସ୍ୱ ଯେ ଲଙ୍ଗଟି ଅଟଇ ॥
କଲଂ କପୋଳ ଯେ ଅଟଇ । ଏମନ୍ତେ କୃଷ୍ଣ ରୂପ ହୋଇ ॥

ଓଁକାର ଶିର ବୋଲି ଜାଣ । ଏ ରୂପେ ମନ୍ତ୍ର ମୂର୍ତ୍ତି ପୁଣ ॥
ଏ ରୂପେ ମନ୍ତ୍ର ମୂର୍ତ୍ତି କରି । ମଣୋହ୍ର ଆଗି ଧ୍ୟାନ ଧରି ॥
ନମ ଦୁଇ ଯେ ପୃଥ୍ୱୀ ହୋଇ । ବଲ୍ଲଭସ୍ୟ ଆସନ କହ୍ନ ॥
ନମ ଯେ ପାଦ ବୋଲି ଜାଣ । ଗୋପୀଜନ ଷଡ଼ରସେଣ ॥
ଅମଣିଆ ଯେ ଗୋବନ୍ଦାସ୍ୟ । ମଣୋହ୍ର ଗୋପୀଜନ ଦ୍ୱସ୍ୟ ॥
ସ୍ୱାହା ଯେ ଅଧର ଅଟଇ । ବଲ୍ଲଭସ୍ୟ ଅଚମନ କହ୍ନ ॥
ନମ ଯେ ମହାପରସାଦ । ଏମନ୍ତେ ମନ୍ତ୍ର ଗୁଣ ଭେଦ ॥
ଶୁଣ ବାଳକ ଗୋପ ଦାସ । ଅମଣିହାର ଗୁଣ ରସ ॥
ଉଆ ଗୃଉଳ ନୂଆ ହାଣ୍ଡି । ଲିପିଣ ଦଅ ଭୂମିଖଣ୍ଡି ॥
ଡାଲି ତଣ୍ଡୁଳ ଶୋଧାଇବ । ପରିବା ଯତନ କରିବ ॥
ଯତନେ ରନ୍ଧନ କରଣ । ମଣୋହ୍ର ଦେବ ଏ ଭୁବେଣ ॥
ଖୋଲ କର୍ତ୍ତାଳ ବଜାଇବ । ଶଙ୍ଖ ଶିଙ୍ଗା ଯେ ବଜାଇବ ॥
ଏ ରୂପେ ଭୋଗ ଲଗାଇଣ । ଭୋଜନ କର ନାରାୟଣ ॥
ଦାତାକୁ କରି ସୁକଲ୍ୟାଣ । ଆନନ୍ଦେ ରହୁ ବାରଜଣ ॥
ଏମନ୍ତ ନ ଜାଣି ଯେ ଖାଇ । ଦାତା ପାତକ ନ ଖଣ୍ଡଇ ॥
ଆପଣେ ଖାଇ ହୁଏ ନାଶ । ସେ ଦ୍ରବ୍ୟ ହୁଦେ ହୋଇ ବିଷ ॥
ମନ୍ତ୍ର ମୂରତ କରି ଖାଇ । ନାମ ଅଗ୍ନିରେ ପୋଡ଼ି ଯାଇ ॥
ଷଡ଼ଙ୍ଗ କବଚ କରିବ । ମାତୃକା ଭୂତଶୁଦ୍ଧି ସ୍ତବ ॥
ଅଙ୍ଗନ୍ୟାସ ଯେ କରନ୍ୟାସ । ଏହା ଜପିଣ ପାପ ନାଶ ॥
ଧ୍ୟାନ ମୂରତି ଲକ୍ଷ୍ୟେ କର । ମାନସିକେ ବା ମନେ ଧର ॥
ଯେ ଜାଣେ ମନ୍ତ୍ର ମୂର୍ତ୍ତି ଭେଦ । ସେ ଅଙ୍ଗେ ପାପ ନ ଲାଗିବ ॥
ଶୁଣ ହେ ମୁକୁନ୍ଦ ଅନନ୍ତ । କଳିରେ ବୈଷ୍ଣବ ବହୁତ ॥
ପଢେ ଅଧେ ଶିଖିଣ ନରେ । ଗୁରୁ ହୋଇବେ ଘରେ ଘରେ ॥
ଗୁରୁଙ୍କୁ ନ ପୁଚ୍ଛିବେ ତନ୍ତ୍ର । ଦାମ୍ଭିକ ପଣେ ହୋଇ ମତ୍ତ ॥
ଶାସ୍ତ୍ର ପଥ ଯେ ନ ଘୋଷିବେ । ସାଧୁ ସଙ୍ଗତେ ନ ବସିବେ ॥
ଉତ୍ତମ ଗୁରୁ ନ ଖୋଜିବେ । ନ ଜାଣି କାନ ଫୁଙ୍କାଇବେ ॥
ସଂଶୟେ ଲାଗିଲା ମନର । ବାଳକ ଦାସ କ୍ଷମା କର ॥

ଗୁରୁରେ ଉତ୍ତମ ମଧ୍ୟମ । ଏ କଥା ଫେଡ଼ି କହ ମର୍ମ ॥
ଶୁଣ ହେ ବାଳକ ମୁକୁନ୍ଦ । କହିବା ତହିଁର ଯେ ଭେଦ ॥
ଧାନ ଅଗାଡ଼ି କାହିଁ ସରି । ଭେଣ୍ଡି କଣ୍ଟା ଉତ୍ତମ କରି ॥
ଶ୍ୱେଟଙ୍କା ଗାଈ ଦୁଧ ସମ । ପିତଳ କାହିଁ ହେବ ହେମ ॥
ମୂର୍ଖ ପଣ୍ଡିତ କାହିଁ ସରି । ଏଣୁ ଉତ୍ତମ ଗୁରୁ କରି ॥
ଯନ୍ତ୍ର ମନ୍ତ୍ର ଯେ ଅଷ୍ଟ କାଳ । ତନ୍ତ୍ର ଭେଦବ ଦେହ ସ୍ଥଳ ॥
ଶୁଦ୍ଧା ଅବାଡ଼ ଜ୍ୟୋତି ଜାଣି । ସମାଧି ସାଧୁଥିବ ପୁଣି ॥
ଏ ଅଷ୍ଟ ରସ ଯେ ଜାଣିବ । ଏ ଗୁରୁ ଖୋଜି ନାମ ନେବ ॥
ଏ ଗୁରୁ ପୂର୍ବ ଭାଗ୍ୟେ ଥିଲେ । ମିଳଇ ପୂର୍ବ ପୁଣ୍ୟ ଫଳେ ॥
ପୂର୍ବର ଭାଗ୍ୟ ଥିଲା ଯେଣୁ । ମିଳିଲ ଅମ୍ଭ ପାଶେ ତେଣୁ ॥
ରାମ ଭରତ ବୀର ସୁତ । ଗୋପାଳ କୁଳର ମହନ୍ତ ॥
ଖୋଲ କଂସାଳ ରସମାଳା । ତୁମ୍ଭେ ସଂସାରେ କଲ ଭେଳା ॥
ତୁମ୍ଭ ଅଂଶରେ ପାପ ନାହିଁ । ପୁଣ୍ୟ ଧନୁ ଧନ ବଢ଼ଇ ॥
କ୍ଷିର ପୀଢ଼ରେ ତେଜ ଥିବ । କିଛି ଛଡ଼ରେ ତୁଟି ଯିବ ॥
ଅଷ୍ଟମ ଠାରେ କିଛି ଯିବ । ଦଣ୍ଡେମ ମଳିନ ହୋଇବ ॥
ଏ କଳିକାଳ ଯେ ଗ୍ରାସିବ । ସକଳ ଧର୍ମ ନାଶ ଯିବ ॥
ସେରେ ରାନ୍ଧିଲେ କଲେ ହେବ । ଦୁଃଖରେ ସତ ନ ଛାଡ଼ିବ ॥
ଯେ ଅନ୍ନ ଦାନ ନ ଦିଅଇ । କଳିରେ ନାଶ ହେବ ସେହି ॥
ଜ୍ୟୋତି ଚହ୍ଲିଲ ନାହିଁ ବଳ । ସେ ନଷ୍ଟେ ବିରଜାର ପାଳ ॥
କଳିରେ ଦାସ୍ୟା ନାମ ସାର । ଅଚ୍ୟୁତ କଥା ମନେ ଧର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ
ରସଗୁଣ କଥନେ ମଣୋହି ଭେଦ ବର୍ଣ୍ଣନେ
ନାମ ଏକଚତ୍ୱାରିଂଶ ପଟଳ ।

— :*: —

# ଦ୍ୱିଚତ୍ୱାରିଂଶ ପଟଳ

ଅନନ୍ତ ମୁକୁନ୍ଦ ଗୋବିନ୍ଦ । ବସ୍ତ୍ର ଯାଦବ ଯେ ଆନନ୍ଦ ॥
ମଥୁରି ଉତ୍ଥାନ ପବନ । ବାଳକ ଦାସ ବୃନ୍ଦାବନ ॥
କେଉଁ ମୂରତି ଧ୍ୟାନ କରି । କଳି କଳୁଷ ପାପ ହରି ॥
ଶୁଣ ଚବିଶ ଗୋପସୁତ । ରାମ ବକ ଯେ ବିଷ୍ଣୁ ଭୃଥ ॥
ଅଷ୍ଟ ଅକ୍ଷର ମନ୍ତ୍ର ଭଲ । ମନ୍ତ୍ର ମୂରତି ତ ଶୁଣିଲ ॥
ଯେ ଜପେ ଅଷ୍ଟାଦଶାକ୍ଷର । ମନ୍ତ୍ର ମୂରତି କରେ ନର ॥
ଅଷ୍ଟାଦଶ ପୁରାଣ ଫଳ । ଯେ ଭଜେ ହୃଦସ୍ଥ କମଳ ॥
ଗୋପାଳ ମନ୍ତ୍ର ଧ୍ୟାନ କରି । ଗୋଲୋକ ନିତ୍ୟକୁ ସୁମରି ॥
ତାହାକୁ ଗୋପାଳ ଯେ କହି । ଗୋଲୋକ ଧ୍ୟାନ ଯେ କରଇ ॥
ଗୋଲୋକ ନିତ୍ୟର ବିସ୍ତର । କହିବା ସଂଶସ୍ତ ଅନ୍ତର ॥
ଶୁଣ ହେ ମୁକୁନ୍ଦ ମଥୁସ୍ତି । ମନରେ ଧରି ହେତୁ କରି ॥
ପୃଥିବୀ ଲକ୍ଷେ ଯୋଜନରେ । ସୂର୍ଯ୍ୟମଣ୍ଡଳ ସେ ଠାବରେ ॥
ସୂର୍ଯ୍ୟମଣ୍ଡଳ ଦ୍ୱିଲକ୍ଷର । ଚନ୍ଦ୍ର ଯେ ଅଛନ୍ତି ସେଠାର ॥
ତିନି ଲକ୍ଷ ଯେ ଯୋଜନରେ । ତାରାଗଣ ରହି ସେଠାରେ ॥
ଚତୁର୍ଲକ୍ଷ ଯୋଜନ ପରେ । ଦେବ ବିଶ୍ରାମ ସେହି ପୁରେ ॥
ପାଞ୍ଚ ଲକ୍ଷ ଯୋଜନଠାରେ । ରୁଦ୍ର ଅଛନ୍ତି ସେ ପୁରରେ ॥
ଷଷ୍ଠ ଲକ୍ଷ ଯୋଜନ କହି । ବ୍ରହ୍ମା ଯେ ସେ ପୁରେ ଅଛଇ ॥
ଶହେ ଯୋଜନ ଦୀର୍ଘ ହୋଇ । ପ୍ରସ୍ଥ ତା ଶହେ ନ୍ୟୁନ କହି ॥
ଗୋଲୋକ ନିତ୍ୟ ଆଚ୍ଛାଦନ । କିଶୋର କିଶୋରୀଙ୍କ ସ୍ଥାନ ॥
ଯୁଗଳ ରୂପଙ୍କ ଧିଆନ । ଅନନ୍ତ ମୁକୁନ୍ଦ ହେ ଶୁଣ ॥
ଗୋଲୋକ ପରେ ନିତ୍ୟ କହି । ଅଷ୍ଟରତନ ବେଦୀ ତହିଁ ॥
ଚାରି ଯେ ଚାରି କୋଣ କରି । ଏମନ୍ତେ ଅଷ୍ଟଦିଗ କରି ॥
ଅଷ୍ଟରତନ ଅଷ୍ଟକୋଣ । ନାଗେଣ ହୋଇଛି ନିବାଣ ॥
ସୁବର୍ଣ୍ଣ ପୂର୍ବ ଯେ କୋଣରେ । ଈଶାନ ହୀରା ନିର୍ମାଣରେ ॥
ମାଣିକ୍ୟ ଉତ୍ତର ଦିଗରେ । ମାରାଗ ବାୟୁବ୍ୟ କୋଣରେ ॥

ମର୍କତ ପଶ୍ଚିମରେ ରନ୍ଧ୍ର । ବୈଦୁର୍ଯ୍ୟ ନୈର୍‌ତରେ ଥୋଇ ॥
ପ୍ରବାଳ ଦକ୍ଷିଣ କୋଣରେ । ମୁକୁତା ଅଗ୍ନି ଭାଗ କରେ ॥
ଏ ଅଷ୍ଟ ରତ୍ନବେଦୀ ପରେ । କିଶୋର କିଶୋରୀ ବିହରେ ॥
କିଶୋର ରୂପ ହୃଦେ ଘୋଷ । ଧ୍ୟାନେଣ ସର୍ବ ପାପ ନାଶ ॥
ଶିରେ ମୟୂର ପୁଚ୍ଛ ଶୋହେ । ଡାହାଣ ଭାଗେ ଡଳିଥାଏ ॥
କୁଞ୍ଚିତ କେଶ ଶୋଭିବନ । ବକୁଳ-ମାଳ ଯେ ବେଢ଼ିଣ ॥
କଦମ୍ବ ଦମ୍ୟଣା ପୁଷ୍ପରେ । ବିବିଧ କୁସୁମ ସୁନ୍ଦରେ ॥
ଗୁଞ୍ଜ ଗୁଞ୍ଜ ଯେ ବେଢ଼ି ପାଶ । ଲଲାଟେ ଅଷ୍ଟରତ୍ନ ଭୂଷା ॥
ତାହୁରେ ଚୂଳ ଶୋଭିବନ । ରସ ଯୁବତୀ ମନ ଛନ୍ନ ॥
ଶିଖଣ୍ଡି ବେଢ଼ ଚୂଳ ଶୋଭି । ରସ ଯୁବତୀ ମନ ଲୋଭି ॥
ଭାଲ ପଟରେ ଗୋରଚନା । କଲାକୁ ଗଉର ଶୋଭନା ॥
କମଳ ଲୋଚନ ସୁନ୍ଦର । ନୟନେ ଅଞ୍ଜନର ଗାର ॥
ଭ୍ରୁଭଙ୍ଗ ଅଲେଖ କମାଣ । ନାସାରେ ଶୋଭି ହେମ ଚୁଣ ॥
ସୁରଙ୍ଗ ଅଧର ସୁନ୍ଦର । ସକଳ ରଙ୍ଗ ପରେ ସାର ॥
ମୋତି ପନ୍ତିକ ଦନ୍ତ ଗଞ୍ଜେ । ହାସେ ଯୁବତୀ ମନ ରଞ୍ଜେ ॥
କଣ୍ଠେ କୌସ୍ତୁଭ ଶୋଭିବନ । ନିନ୍ଦଇ ବାଲ ଯେ ତପନ ॥
ରତନ ଜିଣି କଣ୍ଠ ପ୍ରଭା । କୌସ୍ତୁଭମଣି କଣ୍ଠେ ଶୋଭା ॥
କଙ୍କଣ କଟଟୀ ବାହୁଟି । ଶୋଭୁଛୁ ଭୁଜ ଦୁଇଗୋଟି ॥
ହୃଦପଦ୍ମରେ ବ୍ୟାଘ୍ର ନଖି । ରୂପ ଦେଖି ନ ଟଳେ ଆଖି ॥
ପତନୀ କୁଞ୍ଚ ଯେ କାଛେଣୀ । ଅଣ୍ଟାରେ ହେମ ଉଡ଼ିଆଣି ॥
ଘଣ୍ଟି ଘାଗୁଡି ଗୁଞ୍ଜମାଳ । ଲମ୍ବି ପଡ଼ିଛୁ ପାଦତଳ ॥
ପୟରେ ରତନ ନୁପୁର । ନଖ ନିନ୍ଦଇ ସୁଧାକର ॥
ରଙ୍ଗ ଚରଣ ଭକ୍ତ ପାଇ । ବେଢ଼ି କରଣ ଛନ୍ଦ ରନ୍ଧ୍ର ॥
ସେ ପାଦ ଭକ୍ତ ଧ୍ୟାନ କରେ । ସକଳ ପାପ ଦୋଷ ହରେ ॥
ସେ ପାଦେ ଅଙ୍କୁଶ ଅଛଇ । ଅଙ୍କୁଶେ ପାପକୁ ନାଶଇ ॥
ଧ୍ୱଜ ବଜ୍ର ହେ ଚକ୍ର ଚିହ୍ନ । ଛତ୍ର ଅଙ୍କୁଶ ସବଧାନ ॥
ଅର୍ଦ୍ଧ ରେଖା ଯେ ପଦ୍ମ ଶୋହେ । ଭକତପାଇଁ ନାଞ୍ଚ ବହେ ॥

ଆକାଶ ସ୍ଫଟିକ ଗୋଷ୍ପଦ । ସେ ରତ୍ନେ ଭୂଷିତ ଆନନ୍ଦ ॥
ଧନୁ ଯେ ଜମ୍ବୁଫଳ ଶଙ୍ଖ । କଳସ ଶୋଭଇ ସୁରେଖ ॥
ଅଠର କୋଟି ପାପ କ୍ଷୟେ । ପାଦପଦ୍ମକୁ କର ଲୟେ ॥
ପ୍ରଭାତୁଁ ସ୍ନାହାନ କରିବେ । ଏ ରୂପ ଧ୍ୟାନେ ସୁମରିବ ॥
ଦୁଇପ୍ରହରେ ମନ୍ତ୍ର ସ୍ନାନ । କରିବ ଏ ରୂପେ ଧିଆନ ॥
କେମନ୍ତ ସ୍ନାନ କେବା ସ୍ନାନ । କରିବ ସନ୍ଧ୍ୟାବେଳେ ଧ୍ୟାନ ॥
ତ୍ରିତୀୟ ପ୍ରହରେ ରାହାସ । ପୂର୍ଣ୍ଣ କରଣ ନିଜ ବେଶ ॥
ମଣୋହି ବର୍ଦ୍ଧମାନ ଦେବ । ଧ୍ୟାନ କରିଣ ନିଦ୍ରା ଯିବ ॥
ବେନି ଘଡ଼ି ଯେ ରାତ୍ରି ଥିବ । ଏ ରୂପ ଧ୍ୟାନେ ସୁମରିବ ॥
ଏମାନେ ସେବା ବିଧି ଏହି । ଏହାଙ୍କୁ ରସ ଗୁଣ କହି ॥
ରସେ ରସିକ ଭକ୍ତ ଜନ । ରସ ମୂରତି କର ଧ୍ୟାନ ॥
ଅନ୍ନ ଦିଅଇ ଯେଉଁ ଦାସ । ସେ ଜନ ପାଏ ଧ୍ୟାନ ରସ ॥
ଯେ ସତ କହେ ଦାସପଣେ । ପ୍ରାପତ ହୁଅନ୍ତି ସେ ସ୍ଥାନେ ॥
କ୍ଷମା କରନ୍ତି ଦୋଷମାନ । ସେ ଦାସ ଲଭେ ସେହି ସ୍ଥାନ ॥
ଶାନ୍ତ ହୋଇଣ ବୁଲେ ମହୀ । ଏ ଷ୍ଟରୁ ଯୁଗେ ଗତି ପାଇ ॥
ମିଛୁଆ କ୍ରୋଧୀ ଅଶାନ୍ତ ଯେ । ଲଭି ନ ପାରେ ସେ ସ୍ଥାନ ସେ ॥
ଅସତ୍ୟ ଅଧର୍ମ ଯେ କରେ । ସେ ପୁଣ ନ ଯାନ୍ତି ସେ ପୁରେ ॥
ଦୟା ଜଗିଛି ପୂର୍ବଦ୍ୱାର । ଶାନ୍ତରହେ ଉତ୍ତରଦ୍ୱାର ॥
ସତ ପଶ୍ଚିମଦ୍ୱାରେ ରହି । କ୍ଷମା ଦକ୍ଷିଣଦ୍ୱାରେ ଥାଇ ॥
ଲୋଭ ପୂର୍ବକୋଣରେ ବସେ । ମୋହ ବାୟବ୍ୟରେ ଯେ ମିଶେ ॥
କାମ ଯେ ନଇଋତ କୋଣେ । କ୍ରୋଧ ଯେ ଅଗ୍ନିକୋଣେ ଭ୍ରମେ ॥
ଏ ଅଷ୍ଟ ପାଶେ ପାଠ ରହେ । ଛାଡ଼ି ନ ଦିଅନ୍ତି ସେଠାଏ ॥
ଏଣୁ ଯେ ତୁମ୍ଭେମାନେ ଶୁଣ । ଅଳପ କରିବ ଭକ୍ଷଣ ॥
ଦେହ ସକ୍ଷମ ହୋଇଥିବ । ଜ୍ଞାନ ଭଜନ ଯେ ଲଭିବ ॥
ଧନ ଜନରେ ମୋହ ନାହିଁ । ସୁଖେ ବୁଲିବ ତୁମ୍ଭେ ମହୀ ॥
ବିଷୟ ଦ୍ରବ୍ୟେ ନାହିଁ ଆଶ । ମିଛରେ ପ୍ରୟୋଜନ କିସ ॥
ଭିକ୍ଷା ରସେ ନ ଦେବ ମନ । ବର୍ତ୍ତିବ ମଧ୍ୟମ ଉତ୍ତମ ॥

ମନ୍ଦ ଯେ ଅନ୍ଧ ପ୍ରାଣୀମାନେ । ଧନ ପଣକୁ ଧରି ମନେ ॥
ଧନକୁ ଚିର କରିଥାଇ । ଏ ଦିନକାଳେ ନାଶ ଯାଇ ॥
ପାଞ୍ଚ ବା ସାତ ଶତ୍ୟେଠାରେ । ଜନ ମନର ଏ ସଂସାରେ ॥
ପୀଢ଼ି ବା ଦୁଇ ପୀଢ଼ିଠାରେ । ଧନ ନ ରହଇ ତା ଘରେ ॥
ପଣହିଁ ତୁଟଇ ସଂସାରେ । ସୁଖ ବା ଦୁଃଖ ଭୋଗ କରେ ॥
ଧନ ପଣ ଯେ ଜନ ମିଛ । ପ୍ରାଣୀଙ୍କ ନାଶେ ଏ ପ୍ରତ୍ୟକ୍ଷ ॥
ଧନ ମିଳିଲେ ଦେବ ଅନ୍ନ । ପଣ ମିଳିଲେ କର ପୂର୍ଣ୍ଣ ॥
ଜନ ମିଳିଲେ ପୂର୍ବଫଳେ । ସେବିବ ସାଧୁ ପାଦତଳେ ॥
ଚବିଶ ଗୋପ ପିତା ଧନ୍ୟ । ଉତ୍ତମ ପୁତ୍ର କଲେ ଜନ୍ମ ॥
ଧନ ପଣରେ ନାହିଁ ଆଶ । ସ୍ତ୍ରୀ ଜନ ତେଜିଲେ ପାଶ ॥
ହରି ଭଜନ କଲେ ସାର । ଗୁରୁ ସେବାରେ ତତପର ॥
ଏ କଳିଯୁଗେ ଗୋପପୋଏ । ଭୂମ୍ବରେ ତରିବେ ଥୋକାଏ ॥
ତିମିର କ୍ଷୟେ ଚନ୍ଦ୍ର ଦିଶେ । ସୂର୍ଯ୍ୟ ଉଦୟେ ସର୍ବ ଦିଶେ ॥
ମୁକୁନ୍ଦ ଅନନ୍ତ ଦ୍ୱିଜଣ । ପଶିଲେ ଯେ ଦୃଢ଼ ଜ୍ଞାନ ॥
ଏ ଗ୍ରନ୍ଥ ଗୁପ୍ତେ ରଖିଥିବୁ । ଭକତ ଧନ ଏ ଜାଣିବୁ ॥
ଯେ ଗୁରୁ ଭକ୍ତ ଗୀତା ଶୁଣେ । ବୁଝିପାରିଣ ସେବା ଗୁଣେ ॥
ଫଣସ୍ଥ ତାର ମନ୍ତ୍ର ସିବ । ଉତ୍ତମ ଗୁରୁଙ୍କୁ ପୁଚ୍ଛିବ ॥
ପଢ଼ିଲେ ବୁଝି ନ ପାରିବ । ଗୁରୁ ଦେଖାଇଲେ ବୁଝିବ ॥
ବିନା ଗୁରୁରେ ଏହି ପାଠ । କାହିଁ ପାଇବ ଏଥି ଭେଟ ॥
ନିର୍ଗୁଣ ସଗୁଣ ଏ ରସ । ଏଥିରେ ପୁଚ୍ଛେ ପୀୟୂଷ ॥
ସଗୁଣ କହିବା ଦିଶିବ । ନିର୍ଗୁଣେ ମନ ନିବେଶିବ ॥
କଳିରେ ସଗୁଣ ଯେ ଦାସ । ହୋଇବେ ସକଳ ଯେ ଅଂଶ ॥
ନିର୍ଗୁଣେ ଏକ ଏକ ଥିବେ । ତାହାଙ୍କୁ କେହି ନ ପୁଛିବେ ॥
ସେ ଜନଖିନେ ବୁଡ଼ିଥିବେ । ପଙ୍କରେ କୁଞ୍ଜର ଯେ ଭାବେ ॥
କଳିରେ ବଇଷ୍ଣବମାନେ । ପଦାନ୍ତ ତୁରଙ୍ଗେ ଗମନେ ॥
ଶ୍ରେଷ୍ଠ କମ୍ବଳ ଦମ୍ଭ ଲୋଭ । ଏକଇ ଦିନ ଏ ଆରମ୍ଭ ॥
ପ୍ରତାପ ଠାରୁ ବିରଜାଯେ । ଦମ୍ଭେଣ ବଞ୍ଚିବେ ଥୋକାଏ ॥

ବୀର ଠାବରୁ ଗ୍ରାମ ଯାଏଁ । ଦମ୍ଭ ଆରମ୍ଭ ଜନ ରହେ ॥
ଦାନ ଦଣ୍ଡ ଯେ ଦେବ ଦାନ । ହରଣ ହେବ ଯେ ଏମାନ ॥
ଦମ୍ଭ ଆରମ୍ଭ ଦାସମାନେ । ମାଡି ଖାଇବେ ଥାନେ ଥାନେ ॥
ଦମ୍ଭ ଆରମ୍ଭ ତୁମ୍ଭେ ଛାଡ଼ । ଭିକ୍ଷା ମାଗିବ ବୁଲ ଗୋଡ଼ ॥
ସଂସାର ତ୍ୟାଗ କରି ଜନେ । ପଶିବେ ଭକତଙ୍କ ଥାନେ ॥
ଭକତ ପଥ ବୁଡ଼ାଇବେ । ଦମ୍ଭ ଆରମ୍ଭେ ମାତି ଥିବେ ॥
ଦେବୀ ପୂଜା କରିବେ ଦାସ । ଭକ୍ଷିବେ ମାଛ ଯେ ମାଉଁସ ॥
ପର ରମଣୀଙ୍କ ହରିବେ । ଆପୁ ଗଞ୍ଜାରେ ମାତିଥିବେ ॥
ପାଦାନ୍ତ ତୁରଙ୍ଗ ଚଢ଼ିବେ । ମେଲା ମହୋତ୍ସବ ଛାଡ଼ିବେ ॥
ଆପଣା କୁଟୁମ୍ବ ପୋଷିବେ । ବାଦ ଛିଦ୍ରରେ ଧନ ନେବେ ॥
ତତ୍ତ୍ୱରେ ଏକ ଏକ ଦାସ । ଧର୍ମ ପାଳି ନ ଥିବେ ଦେଶ ॥
ସେ ଦାସ ବିହ୍ୱଳ ହୋଇବ । ଅବଶ୍ୟ କଳଙ୍କି ଦେଖିବ ॥
ଚାରି ଲକ୍ଷ ଯେ ବାଇ ରହୁ । ଚାରି ସହସ୍ର ବରଷଇ ॥
ସତ୍ୟ କଳିରେ କରି ଭୋଗ । କରିବେ ରସ କ୍ରୀଡ଼ାରଙ୍ଗ ॥
ତୁମ୍ଭେ ଚରଣ ଥିବ ସଙ୍ଗେ । ଆମ୍ଭର ତୁମ୍ଭ ଅଙ୍ଗ ସଙ୍ଗେ ॥
ଅଚ୍ୟୁତ ଥିବ ଦାସ ପଣେ । ଶୁଣ ଚରଣ ଗୋପଗଣେ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ
ମାନସୀସେବା ଧ୍ୟାନ ଯୋଗ କଥନେ
ଦ୍ୱିଚତ୍ୱାରିଂଶ ପଟଳ ।

—*—

## ତ୍ରିଚତ୍ୱାରିଂଶ ପଟଳ

ମୁକୁନ୍ଦ ଅନନ୍ତ ମଥୁରି । ଗୋବିନ୍ଦ ଆନନ୍ଦ ପସରି ॥
ସ୍ନାହାନ କି ରୂପେ କରର । କରିବୁ କେଉଁ ନଦୀ କୂଳ ॥
ଶୁଣ ହୋ ଚରଣ ମହନ୍ତ । ସଂସାରେ ତିନି ନଦୀ ସତ ॥
ଗଙ୍ଗା ଯମୁନା ସରସ୍ୱତୀ । ଏଥିରୁ ନଦୀମାନେ ହୋନ୍ତି ॥

ପଶ୍ଚୀ ସରସ୍ୱତୀ ସେହି । ବୃଦ୍ଧା ନଦୀକ ଗଙ୍ଗା ଅଛି ॥
ଯମୁନା ମହାନଦୀ ହୁଏ । ମର୍ତ୍ତ୍ୟରେ ତିନ ନଦୀ ବହେ ॥
ଶ୍ରୀ ଜଗନ୍ନାଥଙ୍କ ଆବୋର । ଗୁପତେ ଅଛନ୍ତି ବଦର ॥
ପୁରୁଷୋତ୍ତମ ଯାଜପୁରେ । ଅଛନ୍ତି ଏଥିର ମଧ୍ୟରେ ॥
ଶ୍ରୀ ବୃନ୍ଦାବନରେ ଯେ ତିନ । ସରସ୍ୱତୀ ଗଙ୍ଗା ଯମୁନା ॥
ସେଠାରେ ବିଖ୍ୟାତ ହୋଇଣ । ଜାଣନ୍ତି ସମସ୍ତ ଯେ ଜନ ॥
ଏଠାରେ ଗୁପତ ଯେ ପୁଣ । ଜାଣନ୍ତି ଜାତିସ୍ମର ଗଣ ॥
ଆବର ଅଟେ ତିନ ନଈ । ସ୍ୱର୍ଗତ ଗଙ୍ଗା ଯମୁନାହିଁ ॥
ଇଅଁଳା ପିଅଁଳା ସିଷୁମ୍ନା । ଏମନ୍ତେ ତିନ ନଦୀ ସିନା ॥
ଅକାର ଉକାର ମକାର । ଏମନ୍ତେ ତିନ ନଦୀ ସାର ॥
ଅକାର ଯମୁନା ଅଟଇ । ମକାର ଗଙ୍ଗା ପୁଣ ହୋଇ ॥
ଉକାର ସରସ୍ୱତୀ ଜାଣ । ଏମନ୍ତେ ତିନ ନଦୀ ପୁଣ ॥
ଏ ତିନ ନଦୀରେ ପଶିଣ । ଯେ କରେ ମନ୍ତ୍ର ଯେ ସ୍ନାହାନ ॥
ଅକାରେ ହରେ ଦୁଇ ବସେ । ମକାରେ ରାମ ପରକାଶେ ॥
ଉକାରେ କୃଷ୍ଣ ବେନି ଥର । ଅର୍ଦ୍ଧାଙ୍ଗେ ଶ୍ୟାମ ବସେ ସାର ॥
ଅର୍ଦ୍ଧାଙ୍ଗ ସମୁଦ୍ର ଅଟଇ । ନଦୀମାନେ ପଶନ୍ତି ତହିଁ ॥
ଏଣୁକି ହରେ ରାମ କୃଷ୍ଣ । ଶ୍ୟାମ ମିଶିଣ ଚତୁଃସମ ॥
ତେର ନାମକୁ ନାହିଁ ଭେଟ । ତିନ ଗୁଣିଣ ମନ ମୋଟ ॥
କେ ବୋଲେ ହରେ କୃଷ୍ଣ ରାମ । କେ ବୋଲେ ହରେ ରାମ କୃଷ୍ଣ ॥
ତିନ ନାମରେ ଷୋଳ କର । ଷୋଳକୁ ଭେଦଣ ନ ପାର ॥
ଶିଷ୍ୟକୁ ବୁଝାଇ କହନ୍ତି । ତେର ନାମକୁ ନ ଖୋଜନ୍ତି ॥
ଗଙ୍ଗାରେ ଚାରି ନାମ ରହେ । ଯମୁନା ଚାରି ନାମ ବହେ ॥
ସରସ୍ୱତୀରେ ଚାରି ବସେ । ସମୁଦ୍ରେ ଚାରି ନାମ ମିଶେ ॥
ଏମନ୍ତେ ଷୋଳ ନାମ ଧର । ମନ୍ତ୍ର ସ୍ନାହାନ ନିତ୍ୟେ କର ॥
ହରେ ରାମ ଯେ କୃଷ୍ଣ ଶ୍ୟାମ । ହ୍ରୀଁ ଶ୍ରୀଁ ଯେ ଉତ୍ତମ ॥
କ୍ଲୀଁ ଦାମ ଯେ ମନେ ଗୁଣ । ନନ୍ଦ କନ୍ଦ ଯେ ସୁମରଣ ॥
ଦାନ ଧର୍ମ ଯେ କର ଲଭ୍ୟେ । ସାଧୁ ମଧୁ ହୃଦରେ ଧ୍ୟାସ୍ତେ ॥

କାମ ବ୍ରହ୍ମକୁ କରି ଧ୍ୟାନ । ଷୋଳ ନାମରେ ମନ୍ତ୍ର ସ୍ନାନ ॥
ନଡ଼ୀ ସ୍ଥଳରେ ଅଛି ରନ୍ଧ୍ର । ଏ ଜଳେ ସ୍ନାନ ତୁମ୍ଭେ ଦେଖ ॥
ବୃନ୍ଦାବନକୁ ମାନସରେ । ଧ୍ୟାନ କରିବ ମନ ଦ୍ୱାରେ ॥
ଘଟ ନଦୀ କ ହେତୁ କରି । ନବ ନଦୀକି ମନେ ଧରି ॥
ଯେ ଯେଉଁ ସ୍ଥାନେ ରହୁଥିବ । ଏହା ଧ୍ୟାଇଣ ଗାଧୋଇବ ॥
ଅଶୁଚି କର୍ମ ଯେତେ ଥିବ । ସ୍ମରଣେ ପାପ କ୍ଷୟ ଯିବ ॥
ହରି ନାମରେ ମନ୍ତ୍ର ସ୍ନାନ । କୃଷ୍ଣ ରାମ ସୁମରି ମନ ॥
ମସ୍ତକେ ଜଳ ତିନ ବେଳ । ସିଞ୍ଚିବ ହୃଦୟ ମଣ୍ଡଳ ॥
ଅଶୁଚି ପାପ ଯେତେ ଥାଇ । ଅଙ୍ଗରୁ ଯାଉଣ ପଳାଇ ॥
ଦୀନ ଅଚ୍ୟୁତ କଥା ସାର । ମୁକୁନ୍ଦ ଅନନ୍ତ ସୁମର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ମନ୍ତ୍ରସ୍ନାନ କଥନେ
ନାମ ତ୍ରିଚତ୍ୱାରିଂଶ ପଟଳ ।

—※—

## ଚତୁଃଚତ୍ୱାରିଂଶ ପଟଳ

ମୁକୁନ୍ଦ ଅନନ୍ତ ବାଳକ । କରୁଣା କର ତ ବେଳକ ॥
ଆବର କେଉଁ ମନ୍ତ୍ର ଶୁଣି । ପ୍ରାଣୀ ପାପରୁ ତରେ ପୁଣି ॥
ଶୁଣ ହେ ବୀର ବଇଷ୍ଣବ । କହୁ ପ୍ରକାରେ ମନ୍ତ୍ର ଭାବ ॥
ଶ୍ରୀକୃଷ୍ଣ ଚୈତନ୍ୟ ଠାକୁର । ନଦୀଆ ପୁରେ ମନ୍ତ୍ର ସାର ॥
ଷୋଳ ନାମରୁ ତିନ ନାମ । ମନ୍ତ୍ର ଯେ କଲେକ ଉତ୍ତମ ॥
ହରେକୃଷ୍ଣ ଯେ ମନ୍ତ୍ର କଲେ । ନଦୀଆ ପୁରକୁ କହିଲେ ॥
ମନ୍ତ୍ରରାଜରୁ ନାମେ ଆଣି । ଠାକୁରାଣୀଙ୍କ ମନ୍ତ୍ର ଗୁଣି ॥
ମନ୍ତ୍ରରାଜରୁ ଏକ ନାମ । କୃଷ୍ଣ ମନ୍ତ୍ର କରି ଉତ୍ତମ ॥
ଗାୟତ୍ରୀ ସାବିତ୍ରୀରୁ ସାର । ବାହ୍ମଣ କଲେ ଯେ ବିହାର ॥
କାମ ଗାୟତ୍ରୀ ମନ୍ତ୍ର କରି । ନଦୀଆ ପୋଏ ତା ସୁମରି ॥

ସହସ୍ର ନାମରୁ ବାଛିଣ । କଲେ ଯେ ପଞ୍ଚନାମ ପୁଣ ॥
ନଦୀଆ ପୋଏ ସୁମଣ୍ଡଳେ । ମୂଳ ମନ୍ତ୍ରକୁ ଗୋପ୍ୟ କଲେ ॥
ଶ୍ରୀସୁରସ୍ତମେ ଯେ ରହିଣ । ଶ୍ରୀକୃଷ୍ଣ ଚୈତନ୍ୟ ଯେ ଜାଣ ॥
ସମ୍ପୂର୍ଣ୍ଣ ଷୋଳ ନାମ ଗୁଣ । ଜଗନ୍ନାଥ ଦାସ କହିଣ ॥
ଶ୍ୟାମ ଯେ ପଞ୍ଚାକ୍ଷର ପୁଣ । ଯଶୋବନ୍ତକୁ ଯେ କହିଣ ॥
ତାରକ ବଳରାମ ଦାସେ । କହିଲେ ଯତନେ ହରଷେ ॥
ଶିଶୁକୁ ଏକାକ୍ଷର କହି । ପାଦୁକା ମନ୍ତ୍ର ଆର ଦେଇ ॥
ଅଣ ଅକ୍ଷର ମନ୍ତ୍ରସାର । କହିଲେ ଅଚ୍ୟୁତାନନ୍ଦର ॥
ହଂଚ ସମାଧି ଶୂନ୍ୟଦୀକ୍ଷା । ରାଜାକୁ କହିଲେ ପ୍ରତ୍ୟେକ୍ଷା ॥
ଶିଶୁ ଅନନ୍ତ ଯଶୋବନ୍ତ । ଅଚ୍ୟୁତ କଥା ମନେ ଚିନ୍ତ ॥
ହରେ କୃଷ୍ଣ ଯେ ମନ୍ତ୍ର ଧ୍ୟାଇ । ଶିଶୁକୁ କହିବ ବୁଝାଇ ॥
ହରେ ରାମ କୃଷ୍ଣ ଯେ ଘେନ । ଏ ଛଡ଼ ମନ୍ତ୍ର ବୀଜ ଘେନ ॥
କ୍ଳୀ କୃଷ୍ଣାୟ ଯେ ନାମ । ଏ କୃଷ୍ଣ ମନ୍ତ୍ର ଯେ ଉତ୍ତମ ॥
ଶ୍ରୀଁ ରାଧିକାୟୈ ଯେ ନାମ । ରାଧାଙ୍କ ମନ୍ତ୍ର ଏ ଉତ୍ତମ ॥
ଶ୍ରୀରାଧିକାୟୈ ବିଦ୍ମହେ । ପୁଷ୍ପ ବାଣାୟ ଧୀମହେ ॥
ତନ୍ନୋ ରାଧା ପ୍ରଚୋଦୟାତ୍ । ନାମ ଗାୟତ୍ରୀ ମନ୍ତ୍ର ସ୍ୱାହା ॥
କୃଷ୍ଣ କୃଷ୍ଣ ଗୋବିନ୍ଦେ ପୁଣ । ରାଧା କୃଷ୍ଣ ଯେ ପଞ୍ଚ ଗୁଣ ॥
କ୍ଳୀଁ କୃଷ୍ଣାୟ ଗୋବିନ୍ଦାୟ । ଗୋପୀଜନ ଯେ ବଲ୍ଲଭାୟ ॥
ନମ ମିଶିଣ ଯେ ଅଠର । ଗୋପାଳ ମନ୍ତ୍ରଙ୍କର ସାର ॥
ରାଧେ ଶ୍ୟାମ ଯେ ରାଧେ ଶ୍ୟାମ । ଶ୍ୟାମ ଶ୍ୟାମ ରାଧେ ଉତ୍ତମ ॥
ରାଧେ ରାଧେ କୃଷ୍ଣ ରାଧେ ଯେ । କୃଷ୍ଣ କୃଷ୍ଣ ରାଧେ ରାଧେ ଯେ ॥
ଯୁଗଳ ମନ୍ତ୍ର ସୁମରଣ । କହିବ ଅବୋଧ ଶିଷ୍ୟେଣ ॥
ବୋଧ ଶିଷ୍ୟକୁ ଏହା କହି । ଅଣ ଅକ୍ଷର ମନ୍ତ୍ର ଦେଇ ॥
ତାରକ ଦିବ ଏକାକ୍ଷର । ଆବର ଶ୍ୟାମ ପଞ୍ଚାକ୍ଷର ॥
ଷୋଡ଼ଶ ହରି ନାମ ଦେଇ । ଏ ପଞ୍ଚ ମନ୍ତ୍ର ଗୋପ୍ୟ ଥୋଇ ।
ସ୍ୱେ ପଞ୍ଚ ମନ୍ତ୍ର ମନ୍ତ୍ରସାର । ରଖିଲେ ସୁସାଧୁ ହିତର ॥
କୋଟିକେ ଜାଣ ଏକ ସାର । ଅନନ୍ତ ଯୁଗେ ଅଣକ୍ଷର ॥

ସତ୍ୟ ଯୁଗରେ ଏକାକ୍ଷର । ସବୁଶ ମୂଳ ଅଣକ୍ଷର ॥
ତ୍ରେତାରେ ତାରକ ଅଟଇ । ଶ୍ୟାମପଞ୍ଚ ଦ୍ୱାପରେ ହୋଇ ॥
କଳିରେ ହରେ ରାମ ସାର । ଏଥୁଁ ମନ୍ତ୍ରମାନେ ବାହାର ॥
ହରେ ରାମରୁ ହରେ କୃଷ୍ଣ । ଗୋପାଳ ମନ୍ତ୍ର ଶ୍ୟାମ ଜନ୍ମ ॥
ତାରକୁ ଗାୟତ୍ରୀ ବାହାର । ନାରାୟଣ ମନ୍ତ୍ର ଏକାକ୍ଷର ॥
ସବୁର ମୂଳ ଅଣକ୍ଷର । ଏସ୍ତେ ମନ୍ତ୍ର ଡାଳ ତାର ॥
ଆବର ମନ୍ତ୍ର ଡାଳ ଶାଖା । ଚୌରାଶି ମନ୍ତ୍ର ଆଉ ଲେଖା ॥
ଅକାରେ ଅଣକ୍ଷର ପାଞ୍ଚ । ଦକାରେ ଏକାକ୍ଷର ସଞ୍ଚ ॥
ଆକାରେ ତାରକ ବସଇ । କକାରେ ଶ୍ୟାମ ପଞ୍ଚ ରହୁ ॥
ହକାରେ ହରେ ରାମ ଜାଣ । ଏ ପଞ୍ଚ ମନ୍ତ୍ର ପରମାଣ ॥
ପାଞ୍ଚ ଯୁଗରେ ପାଞ୍ଚ ସାର । ଜପନ୍ତି ପଞ୍ଚ ଯେ କୁମର ॥
ଶିଶୁ ଅନନ୍ତ ଯଶୋବନ୍ତ । ବଳରାମ ଯେ ଜଗନ୍ନାଥ ॥
ଭାଗୀରଥି ଯେ ଛଡ଼ କହି । ବଳରାମଙ୍କ ସଙ୍ଗେ ରହି ॥
ଭଇରି ଯଶୋବନ୍ତ ମେଳେ । ଅଚ୍ୟୁତାନନ୍ଦ ବ୍ରହ୍ମଠୂଳେ ॥
ସ୍ୱରୂପ ଭଟନାଥ ଦାସ । ବାର ଶିଷ୍ୟେରେ ପରବେଶ ॥
ଓଡ଼ରାଷ୍ଟ୍ରରେ ଏ ଜନମ । ଉଦ୍ଧାର କଲେ ଯେ ଅଧମ ॥
ଗ୍ରନ୍ଥ କାଢ ଅଠର ପାଟ । ଛତିଶ କୁଳ ନାନା ଘଟ ॥
ଗୋପାଳ କୁଳ ତାରିବାରେ । ଶ୍ରୀକୃଷ୍ଣ କରୁଣା ମୋହରେ ॥
ତୁମ୍ଭଙ୍କୁ କହିଲୁ ଯେ ତତ୍ତ୍ୱ । ଭକତ ଗୁପତ ମନ୍ତ୍ର ତ ॥
ଗୋପାଳ କୁଳେ ମନ୍ତ୍ର ଦାଅ । ରାମ ଭରଥ ମନେ ଥୁଅ ॥
ତୃତୀୟ ଖଣ୍ଡ ଗୁରୁ ଗୀତା । ଅଚ୍ୟୁତ କହେ ଗୁରୁ କଥା ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ମନ୍ତ୍ର ଗୁଣ
କଥନେ ନାମ ଚତୁଃଚତ୍ୱାରିଂଶ ପଟଳ ।

— — · —

# ପଞ୍ଚଚତ୍ୱାରିଂଶ ପଟଳ

ମୁକୁନ୍ଦ ଅନନ୍ତ ପଚାରେ । ମନରେ ସଂଶୟେ ଅମୃତ ॥
କିଶୋରୀ ବେଶ କି ରୂପରେ । ଧ୍ୟାନ କରିବା ମନଦ୍ୱାରେ ॥
ଶୁଣ ସୁମନେ ବେଶରସ । କିଶୋରୀ ରୂପଧ୍ୟାନ ରସ ॥
କିଶୋରୀ ଅଙ୍ଗ ଅଙ୍ଗ ସେହି । ବେଶ ଉପମା କେବା କହି ॥
ସର୍ବଦା ଅଟନ୍ତି ନବୀନ । ହେମ କୁଙ୍କୁମ ପ୍ରାୟେ ବର୍ଣ୍ଣ ॥
ଲବଣୀ ଶରୀର କୋମଳ । ଚମ୍ପା ପୁଷ୍ପରୁ ସେ ଉଜ୍ଜ୍ୱଳ ॥
ସକୁଞ୍ଚିତ ଯେ କେଶ ସାର । ରୂପ ବନ୍ଦନ ସମ୍ମୁଖର ॥
ଶ୍ରୀଖଣ୍ଡି ଜୁଡ଼ା ବେଢ଼ ଶୋଭା । ନାନା କୁସୁମ ବେଶ ଗଭା ॥
କସ୍ତୁରୀ ଚିତା ଲଲାଟର । ମୁଖ ନିନ୍ଦଇ ସୁଧାକର ॥
ଅଷ୍ଟ ରତ୍ନେ ସୀମନ୍ତମଣି । କବରୀ କୁସୁମ ଓଢ଼ଣୀ ॥
ଶ୍ରବଣେ ଅଷ୍ଟରତ୍ନ କାପ । ଫୁଲ ମଳକଡ଼ି ସ୍ୱରୂପ ॥
ଲଲାଟେ ସିନ୍ଦୁର ଶୋହଇ । ବାଳ ଅରୁଣକୁ ନିନ୍ଦଇ ॥
ନାସା ବେଶରେ ଦନମଣି । ଭ୍ରୂଲତା ଧନୁକୁ ଯେ ଜିଣି ॥
ସୁରଧନୁ ଯେ ସମ ନୋହି । ମଦନ ଧନୁକୁ ଗଞ୍ଜଇ ॥
କମଳ ଦଳ ଯେ ଲୋଚନ । ନୟନେ ଦଳିତ ଅଞ୍ଜନ ॥
ନାସିକା ତିଳ ପୁଷ୍ପ ଶୋଭା । ଦନ୍ତ ମୁକୁତା ପନ୍ତି ଆଭା ॥
ସୁବର୍ଣ୍ଣ ସୂତା କଣ୍ଠେ ଶୋହେ । ଅଷ୍ଟ ରତନ ଲଚ୍ଛି ଥାଏ ॥
ହାର ପଦକ ହୃଦୟର । କଙ୍କଣ କଟକି ବାହୁର ॥
ମୁଦ୍ରିକା ଶୋଭଇ ଅଙ୍ଗୁଳି । ତାଡ଼ ତୋଡ଼ର ବଦମାଳୀ ॥
ସୁସଞ୍ଚ ଶୋଭା କୁଚ ଦୁଇ । ତିନି ଭୁବନେ ମାତା ସେହି ॥
ଓଲଟ କଦଳୀ ଜଘନ । ପୟରେ ନୂପୁର ଯତନ ॥
ଅଷ୍ଟ ରତନ ଅଙ୍ଗୁଷ୍ଠିର । ପୟରେ ଅଲତାର ଗାର ॥
କରେ ଅମୃତ ଶୋଭା ପାଏ । ଗୀତେ ଶ୍ରୀକୃଷ୍ଣ ମନ ମୋହେ ॥
ମୁରଲୀ ଶ୍ରୀକୃଷ୍ଣ ହସ୍ତରେ । ଗାୟନ କରନ୍ତି ସୁସ୍ୱରେ ॥

ସନ୍ଧ୍ୟେ ଗୋଟା ପ୍ରମ୍ନ ଚନ୍ଦି । ଅଷ୍ଟ ରତନ ପାବନ୍ତଇ ॥
ଏଥି ଉପରେ ବେନି ଜନ । ଅଧେ ଅଧେ ଯେ ଅଙ୍ଗ ଭିନ୍ନ ॥
ଗୃହ ଗୃହ ଯେ ଦଶ ଘର । ଏମନ୍ତେ ଅଷ୍ଟ କୋଣ ଧର ॥
ଏଥି ଉପରେ ଏକ ସ୍ଥଳ । ବଜସ୍ତ୍ରେ ମଦନ ଗୋପାଳ ॥
ପୂଜା ପ୍ରଥମ ଦଳ ଠାରେ । ଲଳିତା ବଜସ୍ତ୍ରେ ସେଠାରେ ॥
ନିପୁର ଦ୍ୱିତୀୟ ଦଳେ ଯେ । ସେଠାରେ କରିଛନ୍ତି ବଜେ ॥
ତାହାଙ୍କୁ ସୁମରଣା କରି । ଧ୍ୟାନ ଯେ କିଶୋର କିଶୋରୀ ॥
ରାଧା ରୂପକୁ ଧ୍ୟାନ କରି । ମାତାର ପ୍ରାୟେ ହୃଦେ ଧରି ॥
ଧ୍ୟାନେଣ ଭଗତ ଲଭିବ । ଏ ଅଷ୍ଟ ପ୍ରହରେ ଧ୍ୟାଇବ ॥
ଠାକୁରାଣୀ ଯେ ମନ୍ତ୍ର ଗୁଣି । କୃଷ୍ଣ ମନ୍ତ୍ରକୁ ଜପି ପୁଣି ॥
ଶ୍ରୀଁ ବୀଜରେ ରାଧା ରହେ । କ୍ଲୀଁ ବୀଜରେ କୃଷ୍ଣ ଥାଏ ॥
ଏ ବେନି ବୀଜେ ମନ୍ତ୍ର ପୁଣ । ଧ୍ୟାନେ କରିବେ ସୁମରଣ ॥
ଗୋଲୋକ ରାସରେ ମିଳିବ । ଏ ଦେହେ ଯେବେ ଧ୍ୟାଇଥିବ ॥
ଯେ ଯେଉଁ ବୀଜ ବୁଣିଥାଇ । ସେ ବୀଜ ସେହ୍ନୁ ପୁଣ ପାଇ ॥
ପ୍ରାକୃତ ବନ୍ଧେ ଭାଷା ମାନ । ରଖିଲୁ ଭକତଙ୍କ ଧନ ॥
ଉତ୍ତମ ଗୁରୁଙ୍କୁ ପଚାର । ସାଧିବ ମନ ମଧ୍ୟେ ଧରି ॥
ସଗୁଣ ଦଧି ଯେ ଅଟଇ । ନିର୍ଗୁଣ ଲବଣୀଟି କହି ॥
ସଗୁଣ ଘୋଷି ମନ ବୋଧ । ନିର୍ଗୁଣ ମଧ୍ୟେ ରହେ ଶୁଦ୍ଧ ॥
ମନ୍ତ୍ର ଯନ୍ତ୍ର କୃଷ୍ଣର କଥା । ତନ୍ତ୍ର ମିଶିଣ ରସ ପୋଥା ॥
ନୟନେ ମୁଖେ ସାଧି ହୋଇ । ଏ ରସ ପଥେ ସର୍ବେ ଥାଇ ॥
ଗୁପ୍ତ ଅବାଡ଼ କୋଟି ଧନ । ସମାଧି ଗୃହ ପଥ ଯେନ ॥
କୋଟିକେ ଗୋଟିଏ ସେ ପୁଣ । ଏ ପଥ ସାଧନ ପ୍ରମାଣ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ଧନ । ଅଷ୍ଟ ପ୍ରହର ଗୃହ ଯେନ ॥
ଏ ଏକ ଡେଣା ଯେ ଅଟଇ । ଏଣୁ ଭକତ ପଥ ହୋଇ ॥
ଏ ଅଷ୍ଟଗୁଣ ଗୁଣୁ ଥିବ । ଆପଣେ ତରି ତରାଇବ ॥
ଦୀନ ଅଚ୍ୟୁତ କଥା ବ୍ରତ । ମୁକୁନ୍ଦ ଅନନ୍ତ ହେ ଯେତ ॥
ଶ୍ରଦ୍ଧା କରିବ ଯେ ଗୋପାଳ । ଏ ଗ୍ରନ୍ଥ ରଖି ତାର ସ୍ଥଳ ॥

ଜେ୍ୟାତ ଅଗ୍ନିରେ ପୋଡ଼ି ଯାଇ । ଗୁରୁ ଅଙ୍ଗରେ ପାପ ନାହିଁ ॥
ପର୍ବତ ପ୍ରାୟେ ତୁଳା କରି । ଅଗ୍ନି ରତକେ ଭସ୍ମ କରି ॥
ଅଗ୍ନି ସ୍ୱରୂପ ଗୁରୁ ଯେଣୁ । ଶୀତ ନାଶଇ ଯେ କରଣୁ ॥
ତୃଷା ନାଶଇ ଯେହ୍ନେ ଜଳ । କ୍ଷୁଧା ନାଶଇ ଅନ୍ନଫଳ ॥
ଗୁରୁଟି ଗତର କରତା । ଗୁରୁ କଲ୍ୟାଣେ ଗତଦାତା ॥
ଗୁରୁ କଲ୍ୟାଣେ ପୂର୍ଣ୍ଣୋଜନ । ଗୁରୁ ସୁଚତେ ରାଜ୍ୟ ଧନ ॥
ଗୋପକୁଳରେ ଗୁରୁ ହେବ । ଗୁରୁଙ୍କୁ ତୋଷ କରାଇବ ॥
ମୁକୁନ୍ଦ ଅନନ୍ତ ମଥୁରି । ପବନ ଉତ୍ଥାନାଦ କରି ॥
ବଛ ବାଳକ ବୃନ୍ଦାବନ । ଯାଦବ ଗୋବିନ୍ଦ ଏହି ଧନ୍ୟ ॥
ଆନନ୍ଦ ସୁଦାମ ହେ ଶୁଣ । ଗୁରୁ ଅଙ୍ଗ ଯେ ବଡ଼ ମଣ ॥
ଏ ଗୁରୁ ଅଙ୍ଗ ଯେ କହିବ । ସକଳ ଶାସ୍ତ୍ର ପଢ଼ୁଥିବ ॥
ସକଳ ସାଧୁଙ୍କୁ ପୁଚ୍ଛିବ । ସମସ୍ତ ସାଧୁଙ୍କୁ ପୂଜିବ ॥
ସାଧୁ ପୁଚ୍ଛିଲେ ମନ ସ୍ଥିର । ସାଧୁ ପୂଜିଲେ ମନ ଧୀର ॥
ଶାସ୍ତ୍ର ପଢ଼ିଲେ ମନ ଥାଏ । ତେବେ ଜୀବର ଗତ ହୁଏ ॥
ଶାସ୍ତ୍ର ପଢ଼ିଣ ସୁଖେ ଥିବ । ପୂଜାରେ ଗର୍ବ ନ କରିବ ॥
ଅନ୍ନ ବସନେ ଦେଇ ମନ । ଯତନ ଥାନରେ ଶୟନ ॥
ଚରଣ ଗ୍ରହିବ ଯତନେ । ସନ୍ଧ ପଗ୍ଭରିବ ପ୍ରଶନେ ॥
ବିନା ସେବାର ନାହିଁ ଫଳ । ନିଷ୍ଫଳେ ହୁଅଇ ନିଷ୍ଫଳ ॥
ଦଅଁ ରଖିଣ ନ ପୂଜିଲେ । ଦଅଁ କି ବର ଦିଏ ଭଲେ ॥
ବିନା ପାଣେ କି ଜଳ ରହେ । ସୁପୂର୍ଣ୍ଣ କଲେ ଫଳ ପାଏ ॥
ସେବା କଲେ ଯେ ବରତନ । ସେବା କଲେ ଯେ ବୋଲି ଧନ୍ୟ ॥
ବାରଟିଆ ଯେ ତୃମ୍ଭ ପୋଏ । ଗୁରୁ ସେବାରେ ମନ ରହେ ॥
ତୃମ୍ଭ ଅଂଶ ଯେ ଥିବ ମହି । ରାଜ ଠାବରେ ଯଶ ହୋଇ ॥
ଧନ ପଣହିଁ ପରାପତ । ଗୋପାଳ କୃଷ୍ଣେ ଗୁରୁମତ ॥
ମୁକୁନ୍ଦ ଅନନ୍ତକୁ ଧ୍ୟାଇ । ବିହାସ ଶିଖିବେ ଗୋସାଇଁ ॥
ପବନ ଉତ୍ଥାନ ଗୋବିନ୍ଦ । ଶିଖିବେ ଗ୍ରହି ଗୋପବୃନ୍ଦ ॥
ବସ୍ତ୍ର ସୁଦାମ ଯେ ମଥୁରି । ଏହାଙ୍କଠାରୁ ଶିଖିକରି ॥

କଳିରେ ହେବେ ଗୃହବାସିଆ । ବର ଯେ ଦେଲୁ ବାରହିଆ ॥
ଏ ବର କଳିଯୁଗେ ସାର । ଦୀନ ଅଚ୍ୟୁତ କଥା ଧର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ପାଦପଦ୍ମ କଥନେ
ନାମ ଷଷ୍ଠଚତ୍ୱାରିଂଶ ପଟଳ ।



## ସପ୍ତଚତ୍ୱାରିଂଶ ପଟଳ

ମୁକୁନ୍ଦ ଅନନ୍ତ ମଥୁରା । ଯାଦବ ବାଳକ ପଚୁରା ॥
କେବଣ ସ୍ଥାନେ ରହି ପୁଣ । କରନ୍ତି ପାଦପଦ୍ମେ ଧ୍ୟାନ ॥
ଶୁଣ ଗୃହବାସ ଦାସମାନେ । ଜନମ ଭୂମି ନିତ୍ୟ ସ୍ଥାନେ ॥
ନିତ୍ୟ ଚଉରାଶି ଯୋଜନ । ଶଙ୍ଖର ପ୍ରାୟେ ଅଛି ସ୍ଥାନ ॥
ଯାଜପୁର ପୁରୁଷୋତ୍ତମ । କପିଳାସରୁ ହୁଦେ ନାମ ॥
ଏଥିରୁ ସାର ପଞ୍ଚ କୋଶ । ଶ୍ରୀପୁରୁଷୋତ୍ତମ ପ୍ରକାଶ ॥
ପୂର୍ବରେ ବେଲେଶ୍ୱର ରହି । ସୁଦାମ ବୋଲି ତାକୁ କହି ॥
ପଶ୍ଚିମେ ଲୋକନାଥେଶ୍ୱର ସ୍ଥାନ । ଦାମ ଶାଖା ଯେ ସେ ପ୍ରଧାନ ।
ଉତ୍ତରେ ମାରକଣ୍ଡେଶ୍ୱର । ସୁବଳ ନାମ ଯେ ତାହାର ॥
ଦକ୍ଷିଣେ ଯମେଶ୍ୱର ରହି । ସୁବାହୁ ବୋଲି ତାକୁ କହି ॥
ଦେଉଳେ ବଜ୍ରସ୍ତେ ଗରୁଡ଼ । ଶ୍ରୀବତ୍ସ ଶାଖା ସେହୁ ବଡ଼ ॥
ସାମ ପଶ୍ଚିମ ଦିଗ ଜାଣ । ଋକଟି ପୂର୍ବ ବୋଲି ପୁଣ ॥
ଯଜୁ ଦକ୍ଷିଣ ଦିଗ କହି । ଅଥର୍ବ ଉତ୍ତର ଅଟଇ ॥
ଗରୁଡ଼ ସ୍ତମ୍ଭ ଶିଶୁ ବେଦ । ଏମନ୍ତେ ପଞ୍ଚଥାନ ଭେଦ ॥
ଅର୍ଦ୍ଧମାତ୍ରା ଯେ ସିଂହାସନ । ତା'ପରେ ବସେ ଭଗବାନ ॥
ନିତ୍ୟରେ ଏ ରୂପେ ଧ୍ୟାଇବ । ଏ ଭବସଂସାରୁ ତରିବ ॥
ଏ ଦେହ ଚୌରାଶି ଅଙ୍ଗୁଳ । ଷଡ଼ଚକ୍ର ପଞ୍ଚାଗେ ଠୁଳ ॥
ସିନ୍ଧି ରନ୍ଧ୍ର ଯେ ଅଛି ଗୁହା । ଓଁ କାର ମିଶି ପାଞ୍ଚ ସହ ॥

ପଢ଼ିଣ ମନରେ ବୁଝିବ । ଉତ୍ତମ ମନେଣ ସେବବ ॥
ବାର ବରଷେ କହୁ ପୁଣ । ଶ୍ରଦ୍ଧାରେ ଶିଖିବ ସେ ଜନ ॥
ଉତ୍ଥାନ ପବନ ଗୋବନ୍ଦ । ମଥୁର ବସ୍ତ୍ର ଯେ ଆନନ୍ଦ ॥
ସମସ୍ତେ ବୋଲ ହରି ହରି । ଅଚ୍ୟୁତ କଥା ମନେ ଧରି ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ରାସଗୁଣ କଥନେ
ରାଧାରୂପ ବେଶ ବର୍ଣ୍ଣନେ ନାମ
ପଞ୍ଚଚତ୍ୱାରିଂଶ ପଟଳ ।



## ଷଷ୍ଠ ଚତାରିଂଶ ପଟଳ

ମୁକୁନ୍ଦ ଅନନ୍ତ ପରୃତ । ସୁଦଯ୍ୟା ସୁଚଣ୍ଡରେ ଜଣ ॥
ପାଦ ପଦ୍ମକୁ କର ଧ୍ୟାନ । ଭକତ ଜନେ ଦେଇ ମନ ॥
ସେ ପାଦେ ଶରଣ ପଶନ୍ତି । ପଦ୍ମ ଚରଣ ଭଜୁଥାନ୍ତି ॥
ପଦ୍ମ ଫୁଟିଛି ସେ ଚରଣ । ଫେଡ଼ିଲେ ପାଇବୁ କାରଣ ॥
ଶୁଣ ହେ ଚନ୍ଦଣ ଗୋପାଳ । ପଦ୍ମ ଫୁଟିଛି ପାଦ ତଳ ॥
ଅଥର୍ବ ପୃଥ୍ୱୀ ଯେ ଅଟଇ । ସାମ ଯେ ଜଳ ପୁଣି ହୋଇ ॥
ଋକ ଯେ ପୁଷ୍ପ ପତ୍ର ଜାଣ । ଯଜୁଃ ଯେ କେଶର ପ୍ରମାଣ ॥
ଅଥର୍ବ ପଙ୍କ ବୋଲି ଜାଣ । ସାମ ଯେ ବୃକ୍ଷ ମତ ପୁଣ ॥
ଶିଶୁ ଯେ ବୀଜ ପୁଣ ହୁଏ । ଏମନ୍ତେ ପଦ୍ମ ଫୁଟି ରହେ ।
ଏ ପଦ୍ମ ପରେ ପାଦ ରହେ । ଅକାରୁ କ୍ଲୀଁ ବୀଜ ହୁଏ ॥
ଅକାରେ ଏକାର ମିଶିଣ । ପାଦ ବୋଲିଣ ଏହା ଜାଣ ॥
ଏ ପାଦ ସୁମରଣା କର । ଷୋଡ଼ଶ ମନ୍ତ୍ର ହୃଦେ ଧର ॥
ଚାରି ଚାରିରେ ଆଠ ହୋଇ । ଆଠ ଆଠରେ ଷୋଳ କହି ॥
ହରେ ବସଇ ଯର୍ଜୁ ଦଳେ । କୃଷ୍ଣ ବସଇ ସାମ ମୂଳେ ॥
ରାମ ବସଇ ଋକ ଦଳ । ସାମ ଅଥର୍ବ ଦଳେ ମେଳ ॥

ଏମନ୍ତେ ସୃଷ୍ଟି ଦଳ ହୋଇ । ସୃଷ୍ଟି ଦଳରେ ସୃଷ୍ଟି ହୋଇ ॥
ହ୍ରୀଁ ଯେ ଶ୍ରୀଁ କ୍ଳୀଁ ଦାମ । ନନ୍ଦ କନ୍ଦ ଯେ ଧାନ ଧର୍ମ ॥
ସାଧୁ ମଧୁ କାମ ବୃନ୍ଦରେ । ଷୋଡ଼ଶ ନାମ ଏ ବିଧିରେ ॥
ପାଦ ପଦ୍ମକୁ ସୁମରିବ । ଷୋଡ଼ଶ ମନ୍ତ୍ର ଜପୁଥିବ ॥
ପଦ୍ମୁଁ ଅମୃତ ଝରୁଅଛି । ଚରଣୁଁ ଝାଳ ଯେ ବହୁଛି ॥
ସେ ଝାଳ ଅମୃତ ଅଟଇ । ଅର୍ଦ୍ଧାଙ୍ଗେ ଗଳିଣ ପଡ଼ଇ ॥
ଓଁକାରେ ମିଶି ପାଦତଳ । ମିଳଇ ମୂଳ ଯେ କମଳ ॥
ଏହୁ ଅମୃତ ଭକ୍ତମାନେ । ପିଅନ୍ତି ଜୀବନ ଭଜନେ ॥
ପାଦପଦ୍ମକୁ ଲକ୍ଷ୍ୟ କରି । ଭବ ସାଗରୁ ଯାନ୍ତି ତରି ॥
ମରଣେ ମନ ସେ ଠାବରେ । ମରଣେ ସେ ପାଦ ସୁମରେ ॥
ଶୂନ୍ୟ ଓଁକାର ବୀଜ ଥୋଇ । ବୀଜରୁ ବୀଜ ଉପୁଜଇ ॥
ଏ ସ୍ଥାନ ନ ଚିହ୍ନି ଯେ ମରେ । ପଡ଼ନ୍ତି ଯମ ଯାତନାରେ ॥
ଶିଶୁ ଯେ ଗୋଲୋକ ଅଟଇ । ଏଣୁ ଗୋଲୋକ ଧାମେ ରହି ॥
ନବ ନିମିଷ କ୍ଷଣେ ଦଣ୍ଡେ । ସାଧୁଣ୍ଡ ଥିବ ଜୀବ ପିଣ୍ଡେ ॥
ବୃଅର୍ଥ ଜନମ ନୋହିବ । ଗୋଲୋକ ସେବାରେ ରହିବ ॥
ପାଦପଦ୍ମ ସେ ଯାହା କହି । ଚକ୍ଷୁ ଗୋଚରେ ନ ଦିଶଇ ॥
ମୁଦ୍ରିତ କରି ରହି । ଭ୍ରୂରୁ ଥାନରେ ମନ ଦେଇ ॥
ତେବେ ଦର୍ଶନ ପଦ୍ମପାଦ । ଖଣ୍ଡଇ ସକଳ ବିପଦ ॥
ଯେ ଗୁରୁ ଜାଣେ ଏ ପ୍ରମାଣ । ସେବା କରିବ ସେ ଚରଣ ॥
ଦ୍ୱ ଏକାଦଶୀ ସଙ୍କ୍ରାନ୍ତି । ଅମାବସ୍ୟା ପୂର୍ଣ୍ଣିମୀ ଯେ ତିଥି ।
ଏ ପୁଣ୍ୟ ତିଥିମାନଙ୍କରେ । ପୂଜା କରିବ ଆସି ଘରେ ॥
ଘରକୁ ଆସି ନ ପାରିବ । ଯାଇଣ ଦର୍ଶନ କରିବ ॥
ଗୁରୁ ପୂଜିଲେ ତୀର୍ଥ ଫଳ । ଖଣ୍ଡଇ ନାନା ଅମଙ୍ଗଳ ॥
ଗୁରୁ ଦର୍ଶନେ ପାପ କ୍ଷୟେ । ଗୁରୁ ଦର୍ଶନେ ସର୍ବ ଜୟେ ॥
ନ ଥାଇ ଗୁରୁ ଦରଶନ । ପବିତ୍ର ନୋହେ ଅଙ୍ଗ ଜାଣ ॥
ଗୃହ ବିଷୟ ପାପ ଥାଇ । ଦର୍ଶନେ ଗ୍ରୁଡ଼ିଣ ପଳାଇ ॥
ଗୁରୁଙ୍କ ଅଙ୍ଗେ ସେହୁ ମିଶି । ନାମ ଲକ୍ଷ୍ୟରେ ଗୁରୁ ନାଶେ ॥

ର ବସଇ ଯେ ପୂର୍ବରେ । ସୁଦାମ ଭଜନ ସେଠାରେ ॥
ସି ବସଇ ପଶ୍ଚିମେଣ । ଦାମ ଭଜନ ଏଠାରେଣ ॥
ଧି ବସଇ ଦକ୍ଷିଣରେ । ସୁବାହୁ ଭଜନ ସେଠାରେ ॥
ସ୍ତୁ ବସଇ ଯେ ଉତ୍ତରେ । ସୁବଳ ଭଜନ ସେଠାରେ ॥
ଧି ରେ ପଦ ଦୁଇ ବସେ । ର ରେ ରଜ ଦୁଇ ମିଶେ ॥
ସି ରେ ଶଣ ଦୁଇ ରହେ । ସ୍ତୁ ରେ ବଦ ଦୁଇ ଥାଏ ॥
ଏଠାରେ ଅର୍ଦ୍ଧମାତ୍ରା ଗାର । ଶିଶୁ ବେଦର ଅଟେ ପର ॥
ଏ ପାଶେ ହ୍ନିଁ କ୍ଷିଁ ଦୁଇ । ଏଗାରେ ଅଣାକ୍ଷର ରହି ॥
ଅଣ ଅକ୍ଷର କାନ୍ତି ତେଜ । ଶିଶୁ ବେଦରେ ସେ ବିରାଜ ॥
ସେଠାରେ ଦର୍ଶନ କରିବ । କଳି କଳୁଷ ଭସ୍ମ ଯିବ ॥
ସୂର୍ଯ୍ୟ କିରଣ ପ୍ରାୟେ କାନ୍ତି । ବିଜୁଳି ରୂପେ ଝଟକନ୍ତି ॥
ଶ୍ୱେତ ରକ୍ତ କୁଙ୍କୁମ କଳା । ଶ୍ୟାମଳ ମିଶି ପଞ୍ଚ ମେଳା ॥
ଅନନ୍ତ କିରଣ ମୂରତି । ଧ୍ୟାନ ଧାରଣ ଏହା ଚିନ୍ତି ॥
ମରଣେ ଏହି ରୂପ ଧ୍ୟାଇ । ଲେଶ ନ ରହେ ଦେହ ପାଇଁ ॥
ନୁହଇ ଚଉରାଶୀ ଜାତ । ରହଇ କୃଷ୍ଣ ସେବାରେ ତ ॥
ଅବତାର ମୂରତି ସଙ୍ଗେ । ଲୀଳା କରନ୍ତି ଯୁଗେ ଯୁଗେ ॥
ଅନନ୍ତ ସତ୍ୟ ତ୍ରେତୟାରେ । ଦ୍ୱାପର ଏ କଳି ଯୁଗରେ ॥
ଶ୍ରୀବୃନ୍ଦାବନର ଚରିତ । କହିବା ଶୁଣ ଗୋପସୁତ ॥
ସେ ଚଉରାଶୀ କୋଶ ଜାଣ । ମଥୁରା ଗୋପ ପରମାଣ ॥
ଏଥି ମଧ୍ୟରେ ରତ୍ନବେଦୀ । ପୂର୍ବ ପଶ୍ଚିମ ଉତ୍ତରାଦି ॥
ପଦ୍ମର ପ୍ରାୟେ ସେହି ସ୍ଥାନ । ରସିକ ଭକତ ଭଜନ ॥
ଦକ୍ଷିଣ ମଧ୍ୟଦେଶ କହି । ଏମନ୍ତେ ପଞ୍ଚ ସ୍ଥାନେ ତହିଁ ॥
ପୂର୍ବେ ସୁଦାମର ସେବା । ପଶ୍ଚିମେ ଦାମ ବିହରିବା ॥
ଦକ୍ଷିଣେ ସୁବାହୁ ସେବନ୍ତି । ଉତ୍ତରେ ସୁବଳ ରହନ୍ତି ॥
ପୂରୁବ ଦଳର ଈଶାନେ । ଶ୍ରୀବତ୍ସ ରହି ସେହି କୋଣେ ॥
ମଧ୍ୟେ ବିଜୟେ ରାଧାଶ୍ୟାମ । ଧ୍ୟାନ ଲୋଚନେ କର ଗମ୍ୟ ॥
ପୁରୁଷୋତ୍ତମ ନିତ୍ୟ ରାସ । ରସ ବିହାର ବୃନ୍ଦାଦେଶ ॥

ଶୂନ୍ୟ ସନ୍ନ୍ୟାସ ଦେହେ ଯାଇ । ଏ ଛନ୍ଦ ଥାନେ ମନ ଦେଇ ॥
ଜୀବକୁ କରିବ ଉଦ୍ଧାର । ମନ୍ତ୍ର ସୁମରି ମନ ଦ୍ୱାର ॥
ପୁରୁଷୋତ୍ତମ ଲକ୍ଷ୍ୟେ କଲେ । ମନ୍ତ୍ରରାଜ ଚିନ୍ତିବ ଭଲେ ॥
ଶ୍ରୀବୃନ୍ଦାବନ ଧ୍ୟାନ କରି । ଗୋପାଳ ମନ୍ତ୍ରକୁ ସୁମରି ॥
ଦେହାଦି ରୂପକୁ ଧ୍ୟାଇବ । ଏକ ଅକ୍ଷରକୁ ଭଜିବ ॥
ଶୂନ୍ୟ ସନ୍ନ୍ୟାସ ଲକ୍ଷ୍ୟ ରସ । ବୃନ୍ଦା ସନ୍ନ୍ୟାସ ଛନ୍ଦ ଘୋଷ ॥
ଏ ଛନ୍ଦ ରସ ଯେ ଘୋଷନ୍ତି । ତେବେ ମନରୁ ଫିଟେ ଭ୍ରାନ୍ତି ॥
ଏ ଛନ୍ଦ ରସେ ଯେ ନ ପଶେ । ଅନ୍ଧାର ପ୍ରାୟେ ସବୁ ଦିଶେ ॥
ଏ ଛନ୍ଦ ରସ ଯେ ଜାଣଇ । ଚକ୍ଷୁ ନିର୍ମଳ ଜନ ସେହି ॥
ଗୋପ ମଣ୍ଡପେଣ ଅଇଲ । ନୀଳାଚଳେ ତ ବାସ କଲ ॥
ଏ ଦେହ ଗୋଟି ତ ବାନ୍ଧିଲ । ଯନ୍ତ୍ର ମନ୍ତ୍ରକୁ ଠାବ କଲ ॥
ଏ ଦେହ ରୂପ ଲକ୍ଷ୍ୟ କର । ଏ ଓଡ଼ରାଷ୍ଟ୍ରେ ମଠ କର ॥
ଅନନ୍ତ ମୁକୁନ୍ଦ ଜଂଘର । ସଂଦେବ ବାଳକ ଦେଶର ॥
ଆନନ୍ଦ ସୁଦାମ ଖଣ୍ଡିରେ । ଗୋବିନ୍ଦ କୋଠ ଯେ ଦେଶରେ ॥
ବସ୍ତ୍ର ଯେ କୋଠ ଦେଶ ଲଗେ । ବିହାର କର ଗୋପ ସଙ୍ଗେ ॥
କଟକ ବାଲିଗ୍ରାମ ଦେଶେ । ପବନ ବନ୍ଧର ହରଷେ ॥
ଉତ୍ଥାନ ମଥୁରି ଯେ ଦୁଇ । ନୀଳାଚଳରେ ରହି ଯାଇ ॥
ବାଙ୍କି ମୁହାଣେ ମଠ କର । ନପୁଂସକ ତୁମ୍ଭ ଶରୀର ॥
ବୈରାଗ୍ୟରୂପେ ବସିଥିବ । ପଙ୍ଝା ଭ୍ରମର ପକାଇବ ॥
ଅବଢ଼ା ଖଟଣି ଯେ ମାଲ । ତୁମ୍ଭଙ୍କୁ ଦେବେ ଯେ ଗୋପାଳ ॥
ଅଚ୍ୟୁତ ମଠ ଭଣାଇବ । ତୁମ୍ଭର କଥା ରହିଥିବ ॥
ଚବିଶ ଗୋପାଳ ମିଳିବେ । ତୁମ୍ଭରେ ପୀରତି କରିବେ ॥
ଉତ୍ଥାନ ମଥୁରି ଦି ଜଣ । ଶ୍ରୀ ଜଗନ୍ନାଥଙ୍କ ସେବଣ ॥
ମଠର ପୂର୍ବ ଯେ କୋଠାରେ । ତୁମ୍ଭ ସମାଧି ସେହିଠାରେ ॥
ତୁମ୍ଭ ସମାଧିର ଦର୍ଶନେ । ଗତି ଲଭିବେ ଗୋପଜନେ ॥
ତୁମ୍ଭଙ୍କୁ ସେବିବେ ଗୋପାଳ । ରହିବ ଯାଏଁ ସେହି ସ୍ଥଳ ॥
ଦର୍ଶନ ତାଙ୍କ ସିଦ୍ଧ ଯହିଁ । ଯେ ପୂଜା ତୁମ୍ଭଙ୍କୁ ନ ଦେଇ ॥

ନଡ଼ିଆ ଗଜା ମୁଗ ଫଳ । ଅଭଡ଼ା ଖେଚଡ଼ି ଯେ ଜଳ ॥
ଫୁଲ ଚନ୍ଦନ ସେବା ଯେତେ । ଘୃତ ଲବଣୀ ଛେନା ମତେ ॥
ଗାଇ ମଇଁଷି ଯେ କାମନା । ସେ ମଠେ କରିବ ଥାପନା ॥
ଭଣାଅ ବାରଟିଆ ମଠ । ଅଚ୍ୟୁତଗଣ ଭକ୍ତ କୋଠ ॥
ରାମ ଭରଥ ବିଷ୍ଣୁ ଦାସ । ବନ୍ଧ ଯାଦବ ପଞ୍ଚ ଅଂଶ ॥
ରାମ ରାମ ଦକ୍ଷିଣ ଚନ୍ଦ୍ର । ନିରଞ୍ଜନ ହେ ନନ୍ଦକନ୍ଦ ॥
ସିଧାଇ ମିଶ୍ରି ଅଟେ ବାର । ଅଚ୍ୟୁତ କର୍ଣ୍ଣ ଦାସ ସାର ॥
ଭରଥ ଗୁଣ ଯେ ଗୋପାଳ । ରାମ ଆଠରେ ବାରମେଳ ॥
ଏମନ୍ତେ ଚୈତ୍ୟ ଗୋପାଳ । ବାକି ମୁହାଣ ମଠ ମୂଳ ॥
ଅଚ୍ୟୁତ ମଠ ଭଣାଇବ । ତୁମ୍ଭ କୀରତି ରହିଥିବ ॥
ସୁଶିଷ୍ୟ ଯେ ଅବା ହୁଅଇ । ଗୁରୁଙ୍କ ମଠ ଥଳ ଦେଇ ॥
ଉତ୍ତମ ଶିଷ୍ୟ ଯେତୁ ପୁଣ । ଅନ୍ନ ବସନ ପୂଜା ଠାଣ ॥
ଗୁରୁଙ୍କ ଚରଣ ସେବଇ । ଗୁରୁଙ୍କୁ ଚଉମାସ ଥୋଇ ॥
ଅମାବସ୍ୟା ସଂକରାନ୍ତି ଦିନ । ଦଶମୀ ଏକାଦଶୀ ପୁଣ ॥
ବାଳ୍ୟ ଯେ ଘର ପରବେଶେ । ଏକାଳେ ଗୁରୁ ପରବେଶେ ॥
ବୈଷ୍ଣବ ମେଳେ ଏ କାଳେଣ । ଧନ୍ୟ ସେ ଗୃହ ଜଳ ପୁଣ୍ୟ ॥
ଜନମ ହେଲେ ପ୍ରାଣୀ ମରେ । କୀରତି ରହଇ ସଂସାରେ ॥
ଧ୍ୟାନ ଭଜନ ଯେ କରନ୍ତି । ବାସନା ତାଙ୍କ ରହିଥାନ୍ତି ॥
ନାଦ ପୁତ୍ର ଯେ ତୃମ୍ଭେ ବାର । ନାଦ ପୁତ୍ର ଯେ ବାରସାର ॥
ବନ୍ଧୁ ପୁତ୍ର ଯେ ମିଛ ସେହୁ । ଗୁଣ ପୀଢ଼ି କି ଗ୍ରହିଯାଇ ॥
ନାଦପୁତ୍ର ଯେ ଅଟେ ସାର । ଯୁଗ ଯୁଗରେ ଏ ଅମର ॥
ଶ୍ରୀଗୁରୁ ବୋଲି ଦଣ୍ଡବତ । ପରମ ଗୁରୁ ବୋଲି ତତ୍ତ୍ୱ ॥
ପର ଅପର ଗୁରୁ ଯେତେ । ଯୁଗାଧି ମଲେ ଯେଝାମତେ ॥

ଏମନ୍ତ ବୋଲ ସୁମରଣ । ନାଦ ଶୁଭନ୍ତି ସାର ଜାଣ ॥
ଅପାର ନାଳ କଥା ଥିବ । ଅଚ୍ୟୁତ କଲ୍ୟାଣ ଲଭିବ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ନିତ୍ୟ
ବୃନ୍ଦାବନ ଲୀଳାଦି ସମ୍ବନ୍ଧକଥନେ
ନାମ ସପ୍ତଚତ୍ୱାରିଂଶ ପଟଳ ।

—:*:—

## ଅଷ୍ଟଚତ୍ୱାରିଂଶ ପଟଳ

ମୁକୁନ୍ଦ ଅନନ୍ତ ପବନ । ପଚ୍ଚରୁ ଯୁଗ କଥାମାନ ॥
ଭକ୍ତଙ୍କୁ ଦେଲେ କୃଷ୍ଣ ଲୀଳା । ଚରନ୍ତି ଯୁଗେ ଯୁଗେ ମେଳା ॥
ଶୁଣ ହେ ମୁକୁନ୍ଦ ଅନନ୍ତ । ଶ୍ରୀକୃଷ୍ଣ ରାଧାଙ୍କ ଚରିତ ॥
ପନ୍ଦର ବରଷ ଛ ମାସ । କୃଷ୍ଣର ଅଟଇ ବୟସ ॥
ଅଧିକ ପନ୍ଦର ଯେ ଦିନ । ଶୁଣ କୃଷ୍ଣର ଲୀଳାମାନ ॥
ନୀଳ ମେଘର ପ୍ରାୟେ ବର୍ଣ୍ଣ । ଅଙ୍ଗରେ ପୀତ ଯେ ବସନ ॥
କେୟୂର କଙ୍କଣ ଭୁଜରେ । ବାମେଣ ଚୂଳ ଛନ୍ଦି ପଡ଼େ ॥
ହସ୍ତରେ ମୁରଲୀ ଶୋଭିନ । କଟୀରେ ଘଣ୍ଟି ଯେ ଘଟନ ॥
ରଙ୍ଗ ଚରଣରେ ନୂପୁର । କିଶୋର ବୟସ ସୁନ୍ଦର ॥
ଚଉଦ ବରଷ ଛ ମାସ । ଠାକୁରାଣୀଙ୍କ ସେ ବୟସ ॥
ଝଳଲ ସୁବର୍ଣ୍ଣର କାନ୍ତି । ନୀଳ ବସନ ଝଟକନ୍ତି ॥
ସୁବର୍ଣ୍ଣ ଚୂଡ଼ି ହସ୍ତେ ଶୋଭେ । ସିମନ୍ତିନୀ ଯେ ମନ ମୋହେ ॥
ଲୋଟଣୀ ଜୁଡ଼ା ଶିରେ ଶୋଭା । ଚନ୍ଦ୍ର କୋଟିଏ ନିନ୍ଦେ ପ୍ରଭା ॥
ଚରଣେ ରତନ ନୂପୁର । କିଶୋରୀ ରୂପ କି ସୁନ୍ଦର ॥
ଏମନ୍ତ ରୂପ ଧ୍ୟାନ କର । ଶ୍ରୀବୃନ୍ଦାବନକୁ ସୁମର ॥
ଖୋଲ କର୍ତ୍ତାଳ ରସ ଲୀଳା । କୃଷ୍ଣର ନାମ କର ଭେଳା ॥

ଗୋପ ବାଳକ ମନେ ଧର । ଏ ରୂପେ ଧାଇ ଦନ ହର ॥
ଅଚ୍ୟୁତ ଦାସ ଗୋପେ ଜାତ । ସୁଦାମ ରୂପେଣ ସମ୍ଭୂତ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା କୃତାସ୍ଥ ଖଣ୍ଡେ କୃଷ୍ଣ ବୟସ
ବେଶ ବର୍ଣ୍ଣନେ ନାମ ଅଷ୍ଟଚତ୍ୱାରିଂଶ ପଟଳ ।

—:o:—

## ଊନପଞ୍ଚାଶତ ପଟଳ

ଅନନ୍ତ ମୁକୁନ୍ଦ ପବନ । ଗୋପର କହ ରସମାନ ॥
ଅଷ୍ଟ ନାୟକ ମନୋହାରୀ । ରାଧିକା ସଙ୍ଗରେ ବିହରି ॥
ତାଙ୍କର ବେଶରୂପମାନ । କହ ସଂଶୟ ଯାଉ ମନ ॥
ଲଳିତା ସଖୀଙ୍କ ବୟସ । ଚଉଦ ବରଷ ଛ ମାସ ॥
ଅବର ବାର ଦନ ବଡ଼େ । ସେବନ୍ତ ରାଧାଙ୍କୁ ନଗୁଡ଼େ ॥
ହେମର ପ୍ରାୟେ ରୂପକାନ୍ତ । ପୀତବସନ ଝଟକନ୍ତ ॥
କାଞ୍ଚନ ଚୂଡ଼ି ହସ୍ତେ ଶୋହେ । ରୂପେ ଉପମା କେହୁ ନୁହେ ॥
ତାମ୍ବୁଲ ସେବା ସେ କରନ୍ତ । ପୂର୍ବ ଦଗରେ ସେବା ନତ ॥
ଯାବଟ ଗ୍ରାମେ ତାଙ୍କ ବାସ । ଶୁଣ ଲଳିତା ସଖୀ ରସ ॥
ଅଚ୍ୟୁତ ବଚନ ଏ ଶୁଣ । ମୁକୁନ୍ଦ ଅନନ୍ତ ଦ୍ୱି ଜଣ ॥
ତେର ବରଷ ପାଞ୍ଚ ମାସ । ବିଶାଖା ସଖୀଙ୍କ ବୟସ ॥
ଆବର ତନ ଦନ ହୋଇ । ଗଉର ବର୍ଣ୍ଣ ରୂପ ଶୋହି ॥
ପାଟର ଶାଢ଼ୀ ଅଙ୍ଗେ ଶୋଭା । ରତ୍ନ ଚୂଡ଼ିର ମନଲୋଭା ॥
ପିକଦାନ ଯେ ସେବାକର । ଐଶାନ୍ୟ କୋଣରେ ବିହର ॥
ଶୁଣ ମଥୁରି ମଧୁଦାସ । ବିଶାଖା ସଖୀ ସେବାରସ ॥
ତେର ବରଷ ପାଞ୍ଚମାସ । ଏ ଚମ୍ପା ସଖୀଙ୍କ ବୟସ ॥
ବର୍ଣ୍ଣ ତାଙ୍କର ଶ୍ୱେତ କାନ୍ତ । ନୀଳବସନ ଶୋଭାପାନ୍ତ ॥
ରୂପାର ଚୂଡ଼ି ହସ୍ତେ ଶୋହି । ଆଲଟ ସେବାକରେ ସେହି ॥
ପଶ୍ଚିମ ଦଗେ ତାର ବାସ । କରେ ଶ୍ରୀକୃଷ୍ଣ ସେବାରସ ॥

ଶୁଣ ହେ ପବନ ଆନନ୍ଦ । ଶ୍ରୀକୃଷ୍ଣଲୀଳାର ବିନୋଦ ॥
ଚମ୍ପା କଲତାଙ୍କ ବୟସ । ତେର ବରଷ ଦୁଇମାସ ॥
ଅଧିକ ପରେ ପାଞ୍ଚ ଦିନ । ରୂପ ତାଙ୍କର ଶ୍ୟାମବର୍ଣ୍ଣ ॥
ରଙ୍ଗପଦ୍ମ ସିନ୍ଧ ଶାଢ଼ୀ । କରେଣ ଶୋହେ ହେମ ଚୂଡ଼ି ॥
ଶ୍ରମେ ଚାମର ସେବା କରେ । ଗୃହ ଯେ ତାହାଙ୍କ ଦକ୍ଷିଣରେ ॥
ଶୁଣ ହେ ଗୋବିନ୍ଦ ସୁଦାମ । ଏ ସଖୀମାନଙ୍କର ନାମ ॥
ଇନ୍ଦୁରେଖାଙ୍କର ବୟସ । ବାର ବରଷ ସାତ ମାସ ॥
ଅଧିକ ସାତ ଦିନ ହୋଇ । ହରିତ ବର୍ଣ୍ଣ ଶୋଭା ପାଇ ॥
ପିନ୍ଧନ୍ତି ଶୁକ୍ଳ ଯେ ବସନ । କଙ୍କଣ ତାଡ଼ ଅଷ୍ଟରତ୍ନ ॥
ରେବା ବାଇଦ କରେ ସେବା । ଗୃହ ଯେ ବାୟୁବ୍ୟେ ରହିବା ॥
ଶ୍ୟାମ ଭରଥ ବନ୍ଧୁ ଶୁଣ । ଏ ଗୋପୀମାନଙ୍କର ଗୁଣ ॥
ମୁକୁନ୍ଦ ଅନନ୍ତ ଗୋବିନ୍ଦ । ଗୋପରେ ଗୋପୀଙ୍କ ବିନୋଦ ॥
ଚୌଷଠୀ ଗୋପୀ ଗୋପେ ଜାତ । କୃଷ୍ଣ ସେବାରେ ଉପଜାତ ॥
ସେ ପୁଣ ନଦିଆ ଦେଶରେ । ଜନମ ପୁରୁଷ ଶରୀରେ ॥
କୃଷ୍ଣ ହୋଇଲେ ଚଇତନ । ଭଗତେ କଲେ ସେବାମାନ ॥
ସେ ଭକ୍ତମାନଙ୍କ ଚରିତ । କହିଲେ ଖଣ୍ଡିଣ ଦୁରିତ ॥
ଶୁଣ ଗୋବିନ୍ଦ କୃଷ୍ଣପୋଏ । ବନ୍ଧୁ ଯାଦବ କର ଲୟେ ॥
ଲଳିତା ସଖୀୟୁଥମାନ । ଯେତେ ଭକତ ମନେ ଘେନ ॥
ରତ୍ନାକର ଆଚାର୍ଯ୍ୟ ଯେହି । ରତିକଳା ସେ ଗୋପୀ କହି ॥
ଆବର ରତ୍ନାକର ନାମ । ସୁଭଦ୍ରା ଗୋପୀ ସେ ଉତ୍ତମ ॥
ଚନ୍ଦ୍ରଶେଖର ଏ ଆଚାର୍ଯ୍ୟ । ପ୍ରଭା ଗୋପୀ ବୋଲିଣ ବୁଝ ॥
ଗରୁଡ଼ ଗୋବିନ୍ଦ ଯେ ନାମ । ସେ ଭଦ୍ରା ଲେଖା ସେ ଉତ୍ତମ ॥
ମୁକୁନ୍ଦ ଦତ୍ତ ଯାହା କହି । ସୁମୁଖୀ ସଖୀ ସେ ଅଟଇ ॥
ଦାମୋଦର ପଣ୍ଡିତ ନାମ । ଧନିଷ୍ଠା ଗୋପୀ ସେ ଉତ୍ତମ ॥
କାଳିଆ କୃଷ୍ଣ ଦାସ ଯେହୁ । ସେ କଳହଂସୀ ଗୋପୀ ସେହୁ ॥
କୃଷ୍ଣାନନ୍ଦ ଯେ ନାମ ଜାଣ । କଳାପିନୀ ଗୋପୀ ସେ ପୁଣ ॥
ଲକ୍ଷ ଗୋପୀଙ୍କ ସାର । ଗୋପରେ କଲେ ସେ ବିହାର ॥

ମଣ୍ଡି ଥାନ୍ତି ଏରୂପେ ମେଳ । ଶୁଣ ହେ ଚବଶ ଗୋପାଳ ॥
ବିଶାଖା ଯୂଥଗଣ ଶୁଣ । ରାମଚନ୍ଦ୍ର ଯେ ମନେ ଗୁଣ ॥
ମାଧବ ଆଚାର୍ଯ୍ୟ ଯେ ନାମ । ମାଧବୀ ଗୋପୀ ସେ ଉତ୍ତମ ॥
ନୀଳାମ୍ବର ଯେ ଚକ୍ରବର୍ତ୍ତୀ । ସେ ଗୋପୀ ନାମ ଯେ ମାଳତୀ ॥
ରାମଚନ୍ଦ୍ର ଦତ୍ତ ଯେ ହୋଇ । ଚନ୍ଦ୍ରରେଖା ଗୋପୀଟି ସେହି ॥
ବାସୁଦେବ ଠାକୁର ଯେହୁ । ଶିଶୁମଞ୍ଜରୀ ଗୋପୀ ସେହୁ ॥
ନନ୍ଦନୀ ଆଚାର୍ଯ୍ୟ ଯା କହୁ । ହରନସୁନୀ ଗୋପୀ ସେହୁ ॥
ଶଙ୍କରଘୋଷ ଯାହା ବୋଲ । ଚପଳା ଗୋପୀ ସେହୁ ବୋଲ ॥
ସୁବଳ ମିଶ୍ର ଯାର ନାମ । ସୁବଳା ଗୋପୀ ସେ ଉତ୍ତମ ॥
ବିଶାଖା ଦୂତ ଆଠଜଣ । ଆଠ ଲକ୍ଷ ଯେ ସଙ୍ଗେ ପୁଣ ॥
ଚନ୍ଦ୍ରା ସଖୀର ଯୂଥ ଯେତେ । କହିବା ଠିକ ଆଠମତେ ॥
କମଳଧ୍ୱଜ ନାମ ଯାର । ଗୋପୀ କୁରଙ୍ଗୀ ନାମ ତାର ॥
ବ୍ରଜନାଥ ପଣ୍ଡିତ ହୋଇ । ଶଚୀ ଗୋପୀ ଅଟଇ ସେହି ॥
ବିଷ୍ଣୁ ଦାସ ଯେ ନାମ ଯାର । କୁଣ୍ଡଳୀ ଗୋପିନୀ ମଧ୍ୟର ॥
ପୁରନ୍ଦର ପଣ୍ଡିତ ଶୁଣ । ଚନ୍ଦ୍ରିକା ଗୋପୀ ସେହୁ ଜାଣ ॥
ଗୋବିନ୍ଦ ଆଚାର୍ଯ୍ୟ ଯେ ହୋଇ । ଚନ୍ଦନ ତାରକାଟି ସେହି ॥
ପରମାନନ୍ଦ ଗୁପ୍ତ ନାମ । କୁନ୍ଦକା ଗୋପୀ ସେ ଉତ୍ତମ ॥
ବଳରାମ ଯେ ଦାସ ହୋଇ । ସୁମଦରା ଗୋପୀ ଯେ ସେହି ॥
ଏମନ୍ତେ ଆଠ ଚନ୍ଦ୍ରା ମେଳ । ଆଠ ଲକ୍ଷରେ ତାଙ୍କ ଖେଳ ॥
ଚମ୍ପକଲତା ଗୁଣମାନ । କହିବା ଏକ ମନେ ଶୁଣ ॥
ଶ୍ରୀଲ ପଣ୍ଡିତ ଯାକୁ କହି । କାଳିକା ଗୋପିନୀଟି ସେହି ॥
ଜଗନ୍ନାଥ ଯେ ଦାସ ମାନ । ସେହି ପରା ନୀଳେନ୍ଦ୍ରୀ ନାମ ॥
ଜଗଦୀଶ ଯେ ବୋଲି ନାମ । ରଜନୀ ଗୋପୀ ସେ ଉତ୍ତମ ॥
ସଦାଶିବ ଯେ କବିରାଜ । ସୁଗନ୍ଧ ଗୋପୀ ସେହି ବୁଝ ॥
ରସ୍ୟେ ମୁକୁନ୍ଦାନନ୍ଦ ହୋଇ । ବାଶଳୀ ଗୋପୀନୀ ଯେ ସେହୁ ॥
ମୁକୁନ୍ଦ ଦାସ ଯାର ନାମ । କମଳାନାଗରୀ ଉତ୍ତମ ॥
ପୁରନ୍ଦର ଆଚାର୍ଯ୍ୟ ହୋଇ । ନାଗରୀ ଗୋପୀ ସେ ଅଟଇ ॥

ପଟ୍ଟନାୟକ ବାଣୀ ନାଥ । ନାମ୍ବୀ ଗୋପିନୀ ସେହୁ ତ ॥
ଆଠ ସହସ୍ର ଗୋପୀଗଣ । ଚମ୍ପକଲତା ଯୂଥ ପୂର୍ଣ ॥
ରଙ୍ଗଦେବୀଙ୍କ ସଖୀ ଯେତେ । କହିବା ଶୁଣ ଏକ ଚିତ୍ତେ ॥
କାଶୀ ମିଶ୍ର ଯେ ବୋଲ ତାହାର । କଳକଣ୍ଠିକା ନାମ ଧରେ ॥
ଶିଖୀ ମାହାନ୍ତି ଯେହୁ ହୋଇ । ଶଶୀକଳା ଯେ ଗୋପୀ ସେହୁ ॥
କାଳିଦାସ ଯେ ନାମ ଯାର । କମଳା ଗୋପୀ ନାମ ତାର ॥
ମନୁ ପଣ୍ଡିତ ନାମ ଯେହୁ । ମଧୁରିକା ଯେ ଗୋପୀ ସେହୁ ॥
କବିଚନ୍ଦ୍ର ଯେ ସେ ଠାକୁର । ଇନ୍ଦିରା ଗୋପୀ ଯେ ସୁନ୍ଦର ॥
ହିରଣ୍ୟଗର୍ଭ ନାମ କହୁ । କନ୍ଦର୍ପସୁନ୍ଦରୀ ଯେ ସେହୁ ॥
ପଟ୍ଟନାୟକ କୁଳନିଧି । ସେ କାମଲତା ଗୋପୀ ସିଦ୍ଧି ॥
ଦ୍ୱିଜ ଯେ ପୀତାମ୍ବର ନାମ । ସେ ପ୍ରେମମଞ୍ଜରୀ ଉତ୍ତମ ॥
ରଙ୍ଗଦେବୀର ଆଠ ଯାର । ଏ ଆଠ ଲକ୍ଷରେ ବିହାର ॥
ସୁଦେବୀ ସଖୀ ଯୂଥମାନ । କହିବା ଏକମନେ ଶୁଣ ॥
ରାଘବ ପଣ୍ଡିତ ଯେ ହୋଇ । କାବେରୀ ଗୋପୀ ତାଙ୍କୁ କହୁ ॥
ପଟ୍ଟନାୟକ ଗୋପୀନାଥ । ଚାରୁ କବରୀ ଗୋପୀ ସେ ତ ॥
ମକରଧ୍ୱଜ ଯାର ନାମ । ସୁକେଶୀ ଗୋପିନୀ ଉତ୍ତମ ॥
କଂସାରିସେନ ଯେହୁ ହୋଇ । ଶଶିରେଖା ଯେ ଗୋପୀ ସେହୁ ॥
ଜୀବ ପଣ୍ଡିତ ନାମ ଶୁଣ । ହାରହୀରା ଗୋପୀ ସେ ପୁଣ ॥
ମୁକୁନ୍ଦ କବିରାଜ ଯେହୁ । ମହାହୀରା ଗୋପିନୀ ସେହୁ ॥
ଷୋଡ଼ ନନ୍ଦଦାସ ଯେ ପୁଣ । ହାରବତୀ ଯେ ଗୋପୀ ଜାଣ ॥
ପଟ୍ଟନାୟକ ସୁଧାନିଧି । ମନୋହାରୀ ଯେ ଗୋପୀ ସିଦ୍ଧି ॥
ସୁଦେବୀ ଗୋପୀ ଆଠ ଯାର । ଶତଲକ୍ଷ ଯେ ସଙ୍ଗ ତାର ॥
ତୁଙ୍ଗବିଦ୍ୟାଙ୍କ ଗୁଣମାନ । ଏ ଯୂଥ କଥା ମନେ ଘେନ ॥
ମକରଧ୍ୱଜସେନ ହୋଇ । ମଣିଲୁ ବୃନ୍ଦା ଗୋପୀ କହି ॥
ଯେ ବିଦ୍ୟାବଲ୍ଲଭ ପଣ୍ଡିତହିଁ । ସମଧୁରା ଗୋପୀଟି ସେହୁ ॥
ଗୋବିନ୍ଦ ଠାକୁର ଯେ ପୁଣ । ସୁମେଧା ଗୋପୀ ସେହୁ ଜାଣ ॥
ଯେ କବି ଦଣ୍ଡପୁର ନାମ । ମଧୁରକ୍ଷିକା ଗୋପୀ ଜାଣ ॥

କାନ୍ତ ଠାକୁର ତନୁ କ୍ଷୀଣ । ତନୁମଧ୍ୟା ଯେ ନାମ ଘେନ ॥
ମାଧବ ପଣ୍ଡିତ ଯେ ହୋଇ । ମଧୁସେନା ଗୋପିକା ସେହି ॥
ପ୍ରବୋଧାନନ୍ଦ ଯେହୁ ଶୁଣ । ରଙ୍ଗ ଗୁଣବତୀକି ପୁଣ ॥
ବଳଭଦ୍ର ଭଞ୍ଜ ଯେ ହୋଇ । ସୁହାସ ତୁଙ୍ଗ ଦେବୀ ସେହି ॥
ତୁଙ୍ଗ ବିଦ୍ୟାଙ୍କ ଆଠ ଏହି । ଏ ମୂଳେ ଆଠ ଲକ୍ଷ ଥାଇ ॥
ଇନ୍ଦୁରେଖାଙ୍କ ଯୂଥ ଗଣ । ମନ ସ୍ଥିରେଣ ଏବେ ଶୁଣ ॥
ପରମାନନ୍ଦ ଗୁପ୍ତ ନାମ । ତୁଙ୍ଗଭଦ୍ରା ଗୋପୀ ସେ ଜାଣ ॥
ବଳଭଦ୍ର ପଣ୍ଡିତ ଯେହି । ସୁହାସ ତୁଙ୍ଗ ଗୋପୀ ସେହି ॥
ଯେ ଭବାନନ୍ଦ ରାଏ ହୋଇ । ରଥବତୀକି ଗୋପୀ କହି ॥
ଯେ ଅଟେ ବନମାଳୀ ଦାସ । କମଳା ଗୋପିକାର ଅଂଶ ॥
ଶ୍ରୀକର ପଣ୍ଡିତେ ଯେ ହୋଇ । ଚନ୍ଦ୍ରରେଖା ଗୋପିକା ସେହି ।ଖ।
ମୋହନା ଗୋପୀ ସେହୁ ଜାଣ । ନାଥ ମିଶ୍ର ଯେ ତାର ନାମ ।ଘ।
ପୁରୁଷୋତ୍ତମ ଯେ ପଣ୍ଡିତ । ମଦନଲତା ଗୋପୀ ସେ ତ ॥
ଇନ୍ଦୁରେଖାଙ୍କ ଯୂଥ ଏହି । ଏ ମୂଳେ ଦଶ ଲକ୍ଷ ରହି ॥
ଆଠ ଅଷ୍ଟ ଯେ ଚଉଷଠୀ । କୃଷ୍ଣ ସେବାରେ ଥାନ୍ତି ଖଟି ॥
ଅନନ୍ତ ଗୋପୀ ଏହା ମୂଳେ । ଗୋପେ ଜନମି ସଙ୍ଗେ ଖେଳେ ॥
ଏ ଚଉଷଠୀ ଯେ ମହାନ୍ତ । ଶୁଣ ଚବଣ ଗୋପ ଦାସ ।ଖ।
ନଦିଆ ଭକ୍ତଙ୍କର ରସ । ନଦିଆ ନଗରେ ପ୍ରକାଶ ॥
ଜନ୍ମିଲେ ଉତ୍କଳ ଯେ ଦେଶ । ତାହାଙ୍କ ଗୁଣ ପରକାଶ ।ଗ।

---

ଲକ୍ଷ୍ମଣ ଆଚାର୍ଯ୍ୟ ଯେ ପୁଣ । ମୋହିନୀ ଗୋପୀ ସେହୁ ଜାଣ ॥
ନାଥ ମିଶ୍ର ଯେ ନାମ ହୋଇ । ବିଭଣକ୍ଷା ଗୋପୀ ଯେ ସେହି ॥ **(ଖ)**
ମୋହିନୀ ଗୋପୀ ସେହି ଜାଣ । କୁମାର ଦେବ ସେ ପ୍ରମାଣ ॥
ନାଥ ମିଶ୍ର ଯେ ନାମ ହୋଇ । ଉଜ୍ଜ୍ୱଳ ଗୋପିକା ଯେ ସେହି ॥ **(ଗ)**
ପୁଣି ନଦିଆ ସ୍ଥଳେ ଜାତ । ଏ ଚଉଷଠି ଯେ ମହନ୍ତ ॥
ଶୁଣ ଚବଣ ଗୋପ ଦାସ । ନଦିଆ ଜନ୍ମ ଭକ୍ତ ରସ ॥
ନଦିଆ ଜନ୍ମ ଶେଷ କରି । ଉତ୍କଳ ଦେଶେ ଦେହ ଧରି ॥ **(ଖ,ଗ)**

ଜନ୍ମେ ଜନ୍ମେ ସେ କୃଷ୍ଣ ସଙ୍ଗ । ଭକ୍ତଙ୍କ ଘେନ ଲୀଳା ରଙ୍ଗ ॥
ଶୁଣ ମୁକୁନ୍ଦ ହେ ଅନନ୍ତ । ଅଚ୍ୟୁତ କଥା ମନେ ଘେନ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ଗୋପ ନନ୍ଦଆ
ଭକ୍ତ କଥନେ ଚଉଷଠୀ ମହନ୍ତ ନାମ ବର୍ଣ୍ଣନେ
ନାମ ଊନପଞ୍ଚାଶତ ପଟଳ ।



## ପଞ୍ଚାଶତ୍ ପଟଳ

ରାମ ଦାସ ଯେ ନାମ ଇନ୍ଦ୍ର । ଆବର ଅଭିରାମ ଦୁଇ ॥
ସୁଦାମ ଶଖା ଯାର ନାମ । ଗାଦ୍ଧର ଉତ୍ତରେ ଉତ୍ତମ ॥
ଶ୍ୟାମ ମେଘର ପ୍ରାୟେ ବର୍ଣ୍ଣ । ବୃଷଭ ଶାଖା ସଙ୍ଗେ ଘେନ ॥
ଚନ୍ଦ୍ରରେଖା ଯେ ଗୋପୀ ପୁଣ । ମାଳ ଯେ କୁନ୍ଦ ପୁଷ୍ପ ଜାଣ ॥
ଶାମଳ ଗୋରୁ ତାଙ୍କ ପଲ । ଗୋପରେ ଚରନ୍ତି ଅମୂଲ୍ୟ ॥
ପୀତ ବସନ ଅଙ୍ଗେ ଶୋହି । ବୀଣା ଶବଦେ ଗୀତ ଗାଇ ॥
ସୁଦାମ ବୋଲି ଗୋପ ଦାସ । ସୁନ୍ଦରାନନ୍ଦ ଯେ ପ୍ରକାଶ ॥
ସୁନ୍ଦରାନନ୍ଦ ନନ୍ଦଆରେ । ଜନମ ହେଲେ ଗଙ୍ଗାତୀରେ ॥
ସୁଦାମ ବୋଲି ନାମ କହି । ଉପବନରେ ବିହରଇ ॥
ଚନ୍ଦ୍ରର ପ୍ରାୟେ ତାର ବର୍ଣ୍ଣ । ବିଳାସ ଶାଖା ସଙ୍ଗେ ଘେନ ॥
ଚନ୍ଦ୍ରାବଳୀ ଯେ ସଖୀ ଘେନ । ସେବନ୍ତି ରାଧାକୃଷ୍ଣ ବେନ
ବଇଜୟନ୍ତୀ ପୁଷ୍ପ ହାର । ବାଦ୍ୟ ଯେ କଂସାଳ କମ୍ବୁର ॥
ଧବଳୀ ଗାଈ ଯୁଥ ମେଳ । ନେତ ବସନ ଯେ ନିର୍ମଳ ॥
ବସୁଦାମ ଯେ ନାମ ବହି । ଗୁରୁ ଦାସ ଯେ ତାକୁ କହି ॥

ନନ୍ଦଆ ହୋଇଲେକ ଜାତ । ସଂସାରେ ପବନ ନିର୍ମିତ ॥
ମହାବଳ ଯେ ଗୋପ ନାମ । କୁଞ୍ଜ ବନରେ ଲୀଳାରମ୍ୟ ॥
ଗହ୍ୱର ବର୍ଣ୍ଣ ସେ ଅଟନ୍ତି । ଜମ୍ବୁ ମାନବ ଶାଖା ଯେତ ॥
ମଦନ ସୁନ୍ଦରୀ ସଖୀ ତ । ବନମାଳା ପୁଷ୍ପ ଗୁମ୍ଫିତ ॥
କାଳିଆ ଚୋରୁପଲ ଶୋହେ । ରଙ୍ଗ ବସନ ମନ ମୋହେ ॥
ବଜାନ୍ତି ପତ୍ରର କାହାଳୀ । ଗୋପ ବାଳକମାନ ମିଳି ॥
ମହାବଳ ଯେ ନାମ ଯାର । ଗୋବିନ୍ଦ ଗରୁଡ଼ାନନ୍ଦର ॥
ନନ୍ଦଆ ଦେଶେ ଜାତ ହୋଇ । ଗୁପତ ଜନମ ଅଟଇ ॥
ସୁବାହୁ ଶାଖା ଗୋପେ ଜାତ । ପୁଳିନ ବନେ ବିହରେ ତ ॥
ପାଣ୍ଡୁର ବର୍ଣ୍ଣ ଶୋଭା ପାଇ । ସୁଭଦ୍ରା ପ୍ରଶସ୍ତ ଶାଖାହିଁ ॥
ଶଶିରେଖା ଯେ ସଖୀ ପୁଣ । କାମ୍ୟ ବନରେ ତାର ସ୍ଥାନ ॥
ନୀଳ ନଳିନ ଶୋଭା ପାଇ । ଛିଟ ବସନ ଅଙ୍ଗେ ଶୋହି ॥
ଶିଙ୍ଗା ଶବଦେ ନାଦ ଦ୍ୟନ୍ତି । ଗୋପେ ଗୋପାଳ ଖେଳ ନିତ ॥
ଯେ ଜଗଦୀଶ ସେ ପଣ୍ଡିତ । ସୁବାହୁ ଶାଖା ହୋଇ ଜାତ ॥
ସ୍ତୋକ କୃଷ୍ଣ ଯେ ନାମ ଯାର । ଭାଣ୍ଡୀର ବନେ ସେ ବିହାର ॥
ଶ୍ୱେତ ବର୍ଣ୍ଣ ଯେ ଅଙ୍ଗ ଶୋହି । ବିନୋଦ ଶାଖା ସଙ୍ଗେ ଲଇ ॥
ମଧୁବନ୍ତୀ ଯେ ସଖୀ ପୁଣି । କଦମ୍ବ ମାଳ ପୁଷ୍ପ ଯେନି ॥
କପିଳବର୍ଣ୍ଣ ଗାଭିମାନ । ଅଙ୍ଗରେ ଶ୍ୱେତ ଯେ ବସନ ॥
ମୁରଲୀ ବାଦ୍ୟ ବଜାଇଣ । ଗୋପରେ ରଙ୍ଗ ଖେଳାମାନ ॥
ଗୋପୀନାଥ ଠାକୁର ହୋଇ । ସ୍ତୋକ କୃଷ୍ଣ ଯେ ନାମ ବହି ॥
ସୁବଳ ବୋଲିଣ ଗୋପାଳ । ଲୋହ ବନରେ ତାର ଖେଳ ॥
ସୀତା ସଖୀ ଯେ ସଙ୍ଗେ ଲଇ । ନାନା ପୁଷ୍ପରେ ମାଳ ଶୋହି ॥
ଶ୍ୟାମଳ ଅଙ୍ଗ ଶୋଭା ପାଇ । ଗୋପାଳ ମେଳେ ଖେଳେ ଯାଇ ॥
ପୀତବର୍ଣ୍ଣ ଯେ ଗାଭି ପଲ । ପୀତ ବର୍ଣ୍ଣ ଯେ ଅଙ୍ଗେ ଭଲ ॥
ଖଞ୍ଜଣି ତାଳ ବାଦ୍ୟମାନ । କରନ୍ତି ଗୀତ ଯେ ଗାୟନ ॥
ଗଙ୍ଗା ଦାସ ଯେ ପଣ୍ଡିତ । ସୁବଳ ଶାଖା ସେହୁ ଜାତ ॥
ଅର୍ଜୁନ ଶାଖା ନାମ ଏହି । ତାଳ ବନରେ ବିହରଇ ॥

ଆରକ୍ତ ବର୍ଣ୍ଣ ପ୍ରାୟେ ହୋଇ । ବୃଷଭ ଶାଖା ସଙ୍ଗେ ଥାଇ ॥
ଅଳକାବଳି ସଖୀ ମେଳ । ଶ୍ୱେତ ଗାବ ଯେ ତାଙ୍କ ପଲ ॥
ଶ୍ୱେତ ବସନ ଅଙ୍ଗେ ଶୋହେ । ପତର କାହ୍ନାଳୀ ବଜାୟେ ॥
କାଳିଆ କୃଷ୍ଣ ଦାସ ନାମ । ଅର୍ଜ୍ଜୁନ ଶାଖା ଯେ ଉତ୍ତମ ॥
ଲବଙ୍ଗ ଶାଖା ନାମ ଯାର । କୁଞ୍ଜ ବନରେ ତା ବିହାର ॥
ଅଙ୍ଗ ଯେ ନୀଳବର୍ଣ୍ଣ ଶୋହି । ଭଦ୍ରାସନ ଯେ ଶାଖା ତହିଁ ॥
ସୁମୁଖୀ ସଖୀ ସଙ୍ଗତର । ଗୋପରେ କରନ୍ତି ବିହାର ॥
ଜାଈ ପୁଷ୍ପର ମାଳା ହାର । ଶ୍ୟାମଳ ବର୍ଣ୍ଣ ଗାଈ ତାର ॥
ଶ୍ୟାମଳ ବସନ ଅଙ୍ଗରେ । ବାଦ୍ୟ ଯେ ସିଂହନାଦ କରେ ॥
ଲବଙ୍ଗ ଶାଖା ଜାତ ହୋଇ । କମଳାକର ପୀଡ଼ା ଲଭି ॥
ବିବିଧ ବାଦ୍ୟ ଯେ ବୃଷାଳ । ଗୋପୀ ଗୋପାଳ ଧେନୁ ମେଳ ॥
ମହାବାହୁ ଯେ ନାମ ଯାର । ଏ କୃଷ୍ଣାନନ୍ଦ ଯେ ଠାକୁର ॥ । ଖ,ଗ ।
ଦଶ ଗୋପାଳ ଏଣୁ ଯାର । ରାମକୃଷ୍ଣ ମିଶ୍ରିଣ ବାର ॥
ମଧୁବନରେ ବଳରାମ । ଶ୍ୱେତ ବର୍ଣ୍ଣରେ ଯେ ଉତ୍ତମ ॥
ନୀଳପାଟ ଯେ ବସ୍ତ୍ର ଶୋହେ । ସୁରଭି ଗାଈ ଯେ ଚରାଏ ॥
ଶିଂଘା ଶବଦ ନାଦ କରି । ଗୋପାଳ ମେଳେ ଯେ ବିହରି ॥
ବିବିଧବର୍ଣ୍ଣେ ପୁଷ୍ପମାଳ । ଗୋପେ ଗୋପାଳ ସଙ୍ଗେ ମେଳ ॥
ବଳରାମ ଯେ ଗୋପେ ହେଲେ । ନଦିଆ ନିତ୍ୟାନନ୍ଦ ବୋଲେ ॥
ଶ୍ରୀକୃଷ୍ଣ କାମ୍ୟବନେ ଖେଳ । କାମଧେନୁରେ ତାଙ୍କ ମେଳ ॥
ଶ୍ୟାମ ମେଘର ପ୍ରାୟେ ବର୍ଣ୍ଣ । ଅଙ୍ଗରେ ପୀତ ଯେ ବସନ ॥
ନାନା ସଙ୍ଗୀତ ସବୁ ମିଳି । ନାନାବର୍ଣ୍ଣରେ ରସ କେଳି ॥
ଅଷ୍ଟରତନ ସୁବର୍ଣ୍ଣରେ । ଅଷ୍ଟକୋଣ ଯେ ବେଦୀ ପରେ ॥

---

ମହାବାହୁ ଯେ ନାମ ଯାର । ମଦନ ବନରେ ବିହାର ॥
ପିଙ୍ଗଳ ବର୍ଣ୍ଣ ଶୋଭା ପାଇ । ବୃଷଭ ସଖା ସଙ୍ଗେ ଲଭି ॥
ସିମନ୍ତିନୀ ଯେ ସଖୀ ମେଳା । ମଲ୍ଲିକା ପୁଷ୍ପର ଯେ ମାଳା ॥
ଶ୍ୟାମଳ ଗାଈ ଯେ ଚରାନ୍ତି । ଶ୍ୟାମ ବସନ ଅଙ୍ଗେ ଦେତ । ଖ,ଗ ।

ଶ୍ରୀକୃଷ୍ଣ ବଳେ ତନ୍ତ୍ର କର । ଦ୍ୱାଦଶ ଗୋପ ସଙ୍ଗେ ମିଳ ॥
ଦ୍ୱାଦଶ ଗୋପାଳର ମେଳେ । ଖେଳନ୍ତି ନାନା କୁତୁହଳେ ॥
ଚୌଷଠୀ ଗୋପୀଙ୍କର ସଙ୍ଗ । ଅନନ୍ତ ଗୋପୀ ଲୀଳାରଙ୍ଗ ॥
ଗୋପରେ ଜନ୍ମ ହୋଇଥିଲେ । ନଦିଆ ଦେଶେ ଜାତ ହେଲେ ॥
କୃଷ୍ଣ ଚୈତନ୍ୟ ରୂପେ ଜାତ । ଦ୍ୱାଦଶ ଗୋପାଳ ଯେ ମନ୍ତ୍ର ॥
ତାଙ୍କ ଚରିତ ଗୁଣରସ । ଶୁଣିଣ ସର୍ବ ପାପ ନାଶ ॥
ନୟନେ ଜ୍ଞାନାଞ୍ଜନ ଘଷେ । ଚକ୍ଷୁ ନିର୍ମଳ ହୋଇ ଦିଶେ ॥
ଗୁରୁ ପ୍ରସନ୍ନେ ଦିଏ ଶିଷେ । ଅଜ୍ଞାନ ତମିର ଯେ ନାଶେ ॥
ଏ ଗୁରୁଭକ୍ତ ଜ୍ଞାନ ଦେଇ । ତାଙ୍କୁ ସେବିବା ମନଦେଇ ॥
ଜ୍ଞାନ ଭେଦଲେ ଭକ୍ତ ପାଇ । ଭକ୍ତ ଭେଦଲେ ଜ୍ଞାନ ପାଇ ॥
ପକ୍ଷୀ ଯେସନ ଦୁଇ ମତ । ଦୁଇ ଡେଣାରେ ଉଡ଼େ ସେତ ॥
ଜ୍ଞାନ ଭକତ ଏକ ଡେଣା । ସଗୁଣ ଭକ୍ତ ଏକ ଜଣା ॥
ସଗୁଣ ଯେ ନର ଭଜଇ । ନିର୍ଗୁଣେ ଅନ୍ଧ ହୋଇ ଥାଇ ॥
ନିର୍ଗୁଣ ଯେଣୁ ବୁଝିଥାଇ । ସଗୁଣ ନ ଭଜେ ଅନ୍ଧହି ॥
ନିର୍ଗୁଣ ସଗୁଣାଦି ମତ । ଭକତମାନଙ୍କ ଏ ଦ୍ୱନ୍ଦ୍ୱ ॥
ମାଧୁର୍ଯ୍ୟେ ଐଶ୍ୱର୍ଯ୍ୟେ ଯେ ଅଛୁ । ଐଶ୍ୱର୍ଯ୍ୟ ମାଧୁର୍ଯ୍ୟେ ମିଶିଛୁ ॥
ବୃନ୍ଦାବନରେ ସ୍ୱଜନୀତ । ଐଶ୍ୱର୍ଯ୍ୟେ ଅଟଇ ଏ ସ୍ୱୀତ ॥
ନିର୍ଗୁଣ ସଗୁଣ ବୁଝିଲ । ମନ ନିଶ୍ଚଳ ତୁମ୍ଭେ କଲ ॥
ମୁକୁନ୍ଦ ଅନନ୍ତ ଗୋବିନ୍ଦ । ଉଦ୍ଧାନ ପବନ ଆନନ୍ଦ ॥
ଦୀନ ଅଚ୍ୟୁତ କଥାମାନ । ତୁମ୍ଭ କୁଳକୁ ହେବ ଧନ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ଦ୍ୱାଦଶ
ଗୋପାଳ ବେଶବର୍ଣ୍ଣନେ ନାମ
ପଞ୍ଚାଶତ୍ ପଟଳ ।

---

# ଏକପଞ୍ଚାଶତ୍ ପଟଳ

ଗୋପରେ କୃଷ୍ଣ ଜନମିଲେ । କେ ତାଙ୍କ ମାତା ପିତା ହେଲେ ॥
ଏ କଥା ବାରେ ଆଜ୍ଞା ହେବ । ମନୁ ସଂଶୟ ଆମ୍ଭ ଯିବ ॥
ଶୁଣ ହେ ଗୋପାଳ ପ୍ରଧାନ । ଗୋପ ବାଳକ ମନେ ଘେନ ॥
ଯେ ଜଗନ୍ନାଥ ମିଶ୍ର ନାମ । ପୁରନ୍ଦର ସେ ଇନ୍ଦ୍ର ସମ ॥
ଇନ୍ଦ୍ର ଘୋଷ ଯେ ନାମ ଜାଣ । ନଦିଆ ଜଗନ୍ନାଥ ପୁଣ ॥
ଯଶୋଦା ନାମ ଯେହୁ ହୋଇ । ନଦିଆ ଦେଶେ ଶଚୀ ସେହି ॥
ଯେ କୃଷ୍ଣ ଗୋପପୁରେ ଜାତ । ସେ ହେଲେ ଶଚୀର ଯେ ସୁତ ॥
ଲକ୍ଷ୍ମୀ ଜନମ ଏଠୁ ପୁଣ । ରୁକ୍ମିଣୀ ଦେବୀ ସେହୁ ଜାଣ ॥
ସତ୍ୟଭାମା ଯେ ହୋଇଥିଲେ । ନଦିଆ ବିଷ୍ଣୁପ୍ରିୟା ହେଲେ ॥
ହାଡ଼ାଇ ପଣ୍ଡିତ ଯେ ହୋଇ । ନଦିଆ ବସୁଦେବ ସେହି ॥
ନଦିଆ ପଦ୍ମାବତୀ ହୋଇ । ରୋହିଣୀ ମଥୁରାରେ ସେହି ॥
ଗୋପରେ ଯେହୁ ବଳରାମ । ସେ ନିତ୍ୟାନନ୍ଦ ବୋଲି ଜାଣ ॥
ରେବତୀ ଗୋପେ ଯେହୁ ହୋଇ । ବସୁଧା ନାମ ତାକୁ କହି ॥
ବାରୁଣୀ ବୋଲି ଯେହୁ ନାମ । ଜାହ୍ନବୀ ବୋଲି ସେ ଉତ୍ତମ ॥
ଈଶ୍ୱର ଗୁରୁ ଯେହୁ ହୋଇ । ଅଦ୍ୱୈତ ପ୍ରଭୁ ତାକୁ କହି ॥
ପାର୍ବତୀ ନାମ ଯେହୁ ଜାଣ । ସେ ସୀତା ଠାକୁରାଣୀ ଜାଣ ॥
ଅଦ୍ୱୈତ ପ୍ରଭୁର ଚରିତ । ପ୍ରଭୁ ନିତ୍ୟାନନ୍ଦ କଥା ତ ॥
ଶ୍ରୀମହାପ୍ରଭୁ ଚଇତନ । ଏହାଙ୍କ ଯୂଥଗଣ ମାନ ॥
ଶୁଣିଣ ହେତୁ ଚିତ୍ତେ ଧର । ଅନନ୍ତ ମୁକୁନ୍ଦ ସୁମର ॥
ଏ ରୂପ ଚରିତ୍ର ପାପ ନାଶ । ରାମ ଭରଥ ବନ୍ଦିଦାସ ॥
ପ୍ରାକୃତ ପଦ ଗୀତ କରି । ତୁମ୍ଭ କୁଳକୁ ଦୀପ କରି ॥

ଏ ଗୀତ ଛଷ୍ଯ ଖଣ୍ଡ ପାଠ । ପଢ଼ିଲେ ଫିଟିବ କବାଟ ॥
ଶୁଣିଲଟିକ ହୋ ଗୋପାଲ । ଅଚ୍ୟୁତ ବଚନ ଏ ସାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ନନ୍ଦ,
ବସୁଦେବ, ଯଶୋଦା ରୋହିଣୀ ଜନ୍ମକଥନେ
ନାମ ଏକପଞ୍ଚାଶତ୍ତ୍ ପଟଳ ।

---

## ଦ୍ୱିପଞ୍ଚାଶତ୍ ପଟଳ

ଅଂଶଟି ସାର ସବେ ଗୋପେ । ଜନମ ହୋଇଲେ କରୂପେ ॥
ରୂପରୁ ପଞ୍ଚାଶ ସେ ହେଲେ । କରୂପେ ସେ ନାମ ବହିଲେ ॥
ଏ କଥା କହିଲେ ଆମ୍ଭର । ମନରୁ ଫିଟିବ ଅନ୍ଧାର ॥
ଶୁଣ ମୁକୁନ୍ଦ ହେ ସୁଦାମ । ଅନନ୍ତ ଗୋପାଳ ଉତ୍ତମ ॥
ଗଦାଧର ପଣ୍ଡିତ ନାମ । କୃଷ୍ଣପ୍ରିୟା ସେ ଗୋପୀ ଜନ୍ମ ॥
ରସିକ ଦାମୋଦର ଯେହି । ଲଳିତା ସଖୀ ଜାତ ହୋଇ ॥
ରାଏ ଯେ ରାମାନନ୍ଦ ନାମ । ବିଶାଖା ସଖୀ ଏ ଉତ୍ତମ ॥
ଯେ ଶିବାନନ୍ଦ ଯେ ଠାକୁର । ସେ ଚନ୍ଦ୍ରା ଗୋପୀ ଯେ ସୁନ୍ଦର ॥
ବସୁ ରାମାନନ୍ଦ ଯେ ହୋଇ । ଚମ୍ପକଲତା ଜାତି ସେହି ॥
ଗୋବିନ୍ଦଘୋଷ ଯେହୁ ପୁଣ । ରଙ୍ଗଦେବୀ ଯେ ତାଙ୍କୁ ଜାଣ ॥
ବସୁଦେବ ଯେ ଘୋଷ କହି । ସୁଦେବୀ ବୋଲି ତାକୁ କହି ॥
ମାଧବ ଘୋଷ ଯେହୁ ପୁଣ । ତୁଙ୍ଗବିଦ୍ୟା ଯେ ଗୋପୀ ପୁଣ ॥
ଗୋବିନ୍ଦାନନ୍ଦ ନାମ ଯେହୁ । ଇନ୍ଦୁରେଖା ସେ ଗୋପୀ ସେହୁ ॥
ଏ ଅଷ୍ଟ ସଖୀ ଗୋପେ ସାର । ନଦିଆ ଦେଶେ ଜନ୍ମ ଆର ॥
ଗୋପ ନଦିଆ କଥାମାନ । ଦୀନ ଅଚ୍ୟୁତ କଥା ଯେନ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ଅଷ୍ଟସଖୀ
ଚରିତେ ନାମ ଦ୍ୱିପଞ୍ଚାଶତ୍ତ୍ ପଟଳ ।

---

## ତ୍ରିପଞ୍ଚାଶତ୍ ପଟଳ

ଅଷ୍ଟ ମଞ୍ଜରୀ କଥା ଶୁଣ । ମନରେ ଥିବ ଯେ ରଞ୍ଜିଣ ॥
ମଞ୍ଜରୀ ସଖୀଙ୍କର ପୁଣ । ତାହାଙ୍କ ଅଛୁ ନାନା ଗୁଣ ॥
ଶ୍ରୀରୂପ ଗୋସାଇଁ ସେ ପୁଣ । ରୂପମଞ୍ଜରୀ ଗୋପୀ ନାମ ॥
ଶ୍ରୀ ସନାତନ ଯେ ଗୋସାଇଁ । ଲବଣ ମଞ୍ଜରୀ ସେ ହୋଇ ॥
ଯେ ରଘୁନାଥ ଯେ ଗୋସାଇଁ । ରତ୍ନମଞ୍ଜରୀ ତାକୁ କହି ॥
ରଘୁନାଥ ଯେ ଭଟ୍ଟ ନାମ । ସେ ରସମଞ୍ଜରୀ ଉତ୍ତମ ॥
ଗୋପାଳ ଭଟ୍ଟ ଯାକୁ କହି । ଗୁଣମଞ୍ଜରୀ ସଖୀ ସେହି ॥
ଶ୍ରୀଲୋକନାଥ ଯେ ଗୋସାଇଁ । ଅନଙ୍ଗମଞ୍ଜରୀଟି କହି ॥
ଜୀବ ଗୋସାଇଁ ଯେହୁ ପୁଣ । ବିଳାସମଞ୍ଜରୀ ସେ ଜାଣ ॥
ଯେ କୃଷ୍ଣ କବିରାଜ କହି । କସ୍ତୁରୀମଞ୍ଜରୀଟି ସେହି ॥
ପଲ୍ଲବ ବୃକ୍ଷକୁ ଯେ କହି । ମଞ୍ଜରୀ ସେ ପୁଣ ଅଟଇ ॥
ଏ ଅଷ୍ଟ ଗୋସାଇଁ ଯେ ମୂଳ । ଏଥେଁ ଜନମି ଗୋପେ ଖେଳ ॥
ନଦିଆ ଜାତ ହେଲେ ନାହିଁ । ବୈଷ୍ଣବ ହୋଇଲେ ସଂସାରୀ ॥
ଦୀନ ଅଚ୍ୟୁତ କଥାମାନ । ମନରେ ଦେନ ବାର ଜଣ ॥
ଆବର କୃଷ୍ଣଦାସ ବାର । ତବେଶ ଗୋପ ହେଉ କର ॥
ଏ ଗ୍ରନ୍ଥ ଯାର ଘରେ ଥିବ । ସେ ପଥବଣା ଯେ ନୋହିବ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ଅଷ୍ଟ-
ମଞ୍ଜରୀ ତତ୍ତ୍ୱେ ନାମ ତ୍ରିପଞ୍ଚାଶତ୍ ପଟଳ ।

---

# ଚତୁଃପଞ୍ଚାଶତ୍ ପଟଳ

ବାର ଗୋପାଳ ଯୋଡ଼ି କର । ପୁଚ୍ଛନ୍ତି ଶ୍ରୀଗୁରୁ ପସ୍ୱର ॥
ରାତ୍ରି ଦିବସେ କୃଷ୍ଣ ଲୀଳା । କୋପରେ କି ରୂପରେ ଖେଳା ॥
ଏ ରସ ଗୁଣମାନ ଶୁଣି । ମନେ ରଖିଥିବ ଯେ ପୁଣି ॥
ଶୁଣ ସୁବୁଦ୍ଧି ଦୁଇ ଦାସ । ଅନନ୍ତ ମୁକୁନ୍ଦ ହେ ଶିଷ୍ୟ ॥
ନିଶାନ୍ତ କାଳ ସେବାମାନ । କହିବା କୃଷ୍ଣର ବିଧାନ ॥
ବୃଷଭାନୁ ନନ୍ଦନୀ କଥା । ଶ୍ରୀକୃଷ୍ଣ ଲୀଳାର ବ୍ୟବସ୍ଥା ॥
ପ୍ରଭାତେ ଗୋଧନ ଦୁହିଁଣ । ନନ୍ଦ ମନ୍ଦିରେ ବସି ପୁଣ ॥
ଦଣ୍ଡେ ତଇଲ ମରଦନ । ଦିଦଣ୍ଡ ସ୍ନାନରେ ଗମନ ॥
ବୃଷଭାନୁ ନନ୍ଦନୀ ପୁଣ । ଦଣ୍ଡକେ ପାକ ସଜାଡ଼ିଣ ॥
ଅମୃତମଣୋହି ଯେ ମାନ । ଦଣ୍ଡେ ପରଶେ ରାଧା ଅନ୍ନ ॥
ମୁଖ ପଖାଳି ଦଣ୍ଡେ ଯାଇ । ତାମ୍ବୂଳ ସେବା ଦଣ୍ଡେ କହି ॥
ମୃଗମଦ ଚନ୍ଦନ ଦଣ୍ଡେ । ପ୍ରଥମ ପ୍ରହର ଏ ଖଣ୍ଡେ ॥
ଅପରାହ୍ନ ଯେ କାଳ ସେବା । ଏ କଥା ମନରେ ଘେନିବା ॥
ଦି'ଦଣ୍ଡ ବ୍ରଜକୁ ଗମନ । ଘେନିଣ ଗୋପ ସଖାମାନ ॥
ଦଣ୍ଡେକ ବଂଶୀ ବଟେ ରହି । ଦି'ଦଣ୍ଡ ଗୋପବାସ ଲଇ ॥
ବଇଁଶୀ ଶିଙ୍ଗା ଶଙ୍ଖମାନ । ଦି'ଦଣ୍ଡେ ବଜାନ୍ତି ଯେ ସ୍ୱନ ॥
ବନଭୋଜୀ ଯେ ଦଣ୍ଡେ କରି । ଐଶ୍ୱର୍ଯ୍ୟରାଜ୍ୟରେ ବିହରି ॥
ଦ୍ୱିତୀୟ ପ୍ରହରେ ଏ ରସ । ଶ୍ରୀବୃନ୍ଦାବନରେ ବିଳାସ ॥
ସାୟଂକାଳର କଥାମାନ । ଶ୍ରୀକୃଷ୍ଣଲୀଳା ମନେ ଘେନ ॥
ଦି'ଦଣ୍ଡ ଗୋପୀ ସଙ୍ଗତେଣ । ବିହାର କରନ୍ତି ସେ ପୁଣ ॥
ଦି'ଦଣ୍ଡ ମଧୁର ବଚନ । ଗୋପ ବାଳକେ କଥାମାନ ॥
ବତ୍ସ ଉଠାଇ ଜଳ ଦେଇ । ଏମନ୍ତେ ଦଣ୍ଡେ ବହିଯାଇ ॥
ପୁଳିନ ବନେ ଦଣ୍ଡେ ଯାଇ । ରାଧାଙ୍କ ସଙ୍ଗେ ଲୀଳା ତହିଁ ॥
ପୁଣ ବତ୍ସକୁ ଜଳ ଦେଇ । ଦି'ଦଣ୍ଡ ଚରନ୍ତି ଯେ ଗାଈ ॥

ଦି'ଦଣ୍ଡ ଗୋରୁ ଠୁଳ କରି । ପଥରେ ଦି'ଦଣ୍ଡ ବିହରି ॥
ସନ୍ଧ୍ୟାରେ ଦି'ଦଣ୍ଡ ପ୍ରବେଶ । ଶୁଣ ଦିବସ ଲୀଳାରସ ॥
ପୂର୍ଣ୍ଣକାଳ ଯେ ଲୀଳାମାନ । ଏ କଥା ମନେ ତୁମ୍ଭେ ଘେନ ॥
ସନ୍ଧ୍ୟାରୁ ରାତି ଯେ ପ୍ରହରେ । ଦଣ୍ଡେକ ରହି ନନ୍ଦ ଘରେ ॥
ଦି'ଦଣ୍ଡ ଆଳତି କରନ୍ତି । ଅଷ୍ଟ ସଖୀଙ୍କି ସଙ୍ଗେ ଘେଣି ॥
ପରମ ପୂର୍ଣ୍ଣ ସଖୀମାନ । ରାଧାଙ୍କ ସଙ୍ଗତେ ଯତନ ॥

ଲଳିତା ବିଶାଖା ଚିତ୍ରାଦି । ଚମ୍ପକଲତା ରଙ୍ଗଦେବୀ ॥
ତୁଙ୍ଗବିଦ୍ୟା ଇନ୍ଦୁରେଖାହିଁ । ସୁଦେବୀ ସହିତେଣ ତହିଁ ॥
ଦି'ଦଣ୍ଡ ଆଳତି କରଣ । ବେଢ଼ିଣ ଅଷ୍ଟ ସଖୀ ଗଣ ॥
ସିଂହାସନରେ ଦଣ୍ଡେ ରହି । ବିକଲ୍ପେ ଗୋପ ଗୋପୀ ତହିଁ ॥
ଦି'ଦଣ୍ଡ ମୃଗାକ୍ଷି ନନ୍ଦନ । ବେଶ ଯେ ଶ୍ରୀ ନନ୍ଦନନ୍ଦନ ॥
ଏ ବେଶକାଳ କଥାମାନ । ଏ କଥା ମନେ ତୁମ୍ଭେ ଘେନ ॥

ପ୍ରହରେ ରାତି ଉପରେଣ । ରାଧିକା ରନ୍ଧନ କରଣ ॥
ଭୋଜନ କୃଷ୍ଣଙ୍କୁ କରାନ୍ତି । ତିନି ଦଣ୍ଡ ଯେ ପରଶନ୍ତି ॥
ମୁଖ ପଖାଳ ଦଣ୍ଡେ କରି । ତାମ୍ବୁଳ ସେବା ଦଣ୍ଡେସାରି ॥
ପୁଷ୍ପ ବେଶ ଯେ ଦଣ୍ଡେ ହୋଇ । ଚନ୍ଦନ ସେବା ଦଣ୍ଡେ କହି ॥
ଏମନ୍ତେ ଦ୍ୱିତୀୟ ପ୍ରହରେ । ଶ୍ରୀକୃଷ୍ଣ ଲୀଳା ସ୍ୱେ ଖବରେ ॥
ତୃତୀୟ ପ୍ରହରେଣ ପୁଣ । ଦି'ଦଣ୍ଡ ରାହାସରେ ମଗ୍ନ ॥
ଲଳିତା ମୂଳେ ସଖୀଗଣ । ରହାସ ବୃନ୍ଦଦଣ୍ଡ ପୁଣ ॥

ଦି'ଦଣ୍ଡମାନ ଲୀଳା ରସ । ତୃତୀୟ ପ୍ରହର ବିଳାସ ॥
ସଙ୍ଗମ ସେବା ଲୀଳାମାନ । ଚତୁର୍ଥ ପ୍ରହର ବିଧାନ ॥
ଦି'ଦଣ୍ଡ ପାଠ ବିଦ୍ୟାମାନ । ସଙ୍ଗୀତରସ ବିଦଗ୍ଧେଣ ॥
ଆଲିଙ୍ଗନ ଯେ ଦଣ୍ଡେ ତହିଁ । ଦି'ଦଣ୍ଡେ ଦ୍ରବେ ମିଳି ତହିଁ ॥
ସଙ୍ଗମ କାଳ ପୂର୍ଣ୍ଣ ରସ । ଭଗତ ଜନ ଧ୍ୟାନେ ଘୋଷ ॥
ମଳୟ ପବନ ବହଇ । ରାଧାକୃଷ୍ଣ ଯେ ଲୀଳା ତହିଁ ॥
ଦି'ଦଣ୍ଡ ରାତି ଥାଉଁ ପୁଣ । ଗୋପକୁ କରନ୍ତି ଗମନ ॥

ଏ କାଳମାନ ବୁଝି ପୁଣ । ଧ୍ୟାନ ଯେ କରିବ ବ୍ରଜେଣ ॥
ଯେ କାଳେ ଯେଉଁ ତନୁ ଭାବ । ସେ ଧ୍ୟାନେ ସେବା ଯେ କରିବ ॥
ମୁକୁନ୍ଦ ଅନନ୍ତ ସୁଦାମ । ବନ୍ଦ ଭରଥ ଶୁଣ ରାମ ॥
ଅଚ୍ୟୁତ ଦାସ ବ୍ରଜେ ଆଣ । ଜନ୍ମେ ଜନ୍ମେଣ ତାଙ୍କ ଦାସ ॥
ଏ ଗୁରୁଭକ୍ତି ଗୀତା ତନ୍ତ୍ର । ତୃତୀୟ ଖଣ୍ଡ ସମାପତ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ରାଧାକୃଷ୍ଣ
ଲୀଳା ରାଜ ଦବା ଅଷ୍ଟପ୍ରହର ଚରିତେ
ନାମ ଚତୁଃପଞ୍ଚାଶତ୍ ପଟଳ ।

---

ମହାରାଜା ଶ୍ରୀରାମଚନ୍ଦ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ମୁଦ୍ରଣାଳୟ, ବାଣୀବିହାର

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨ | ୧୯ | ପରଂବ୍ରହ୍ମ | ଅରଂବ୍ରହ୍ମ |
| ୩ | ୬ | ବିଷ୍ଣୁ ଶ୍ୟାମ | ବିଷ୍ଣୁ ଶର୍ମୀ |
| ୩ | ୧୦ | ଏ ମହାଶୂନ୍ୟ | ଯେ ମହାଶୂନ୍ୟ |
| ୩ | ୧୫ | ମହାଶୂନ୍ୟରେ | ମହାଶୂନ୍ୟ ଯେ |
| ୩ | ୧୬ | ଅକାର | ଅଂକାର |
| ୩ | ୨୦ | ଆର | ଅର |
| ୩ | ୨୩ | ବହ୍ମ | ବ୍ରହ୍ମ |
| ୮ | ୮।୯।୧୦ | ଗୋଟି, ଗୋଟିଏ | କୋଟି, କୋଟିଏ |
| ୯ | ୨୪ | ଅଙ୍ଗାର | ଗଙ୍ଗାର |
| ୧୦।୩୫ | ୧୬୭ | ଜାଡେସାର | ଜାଢସ୍ବର |
| ୧୩ | ୧୬ | ଅବାର | ଅକାର |
| ୧୩ | ୧୬ | ଦକାର | ଇକାର |
| ୧୩ | ୧୭ | ଅକାର | ଏକାର |
| ୧୩ | ୧୮ | ଅକାର | ଆକାର |
| ୧୪ | ୭ | ବାଞ୍ଛା | ବାଂଛ |
| ୧୫ | ୨୪ | ବଦର | ବକର |
| ୧୬ | ୯ | ଋଜ | ରଜ |
| ୨୧ | ୪ | ଉଦ୍ଧବ ବଚ | ଉଦ୍ଧ୍ବ ବାହୁ ବେ |
| ୨୧ | ୭ | ଉଦ୍ଧବ ବଚ | ଉଦ୍ଧ୍ବ ବାହୁ ବେ |
| ୨୧ | ୨୩ | ଜାଢ | ଯଢ |
| ୨୧ | ୨୫ | ଉଦ୍ଧବ ବଚ | ଉଦ୍ଧ୍ବ ବାହୁ ବେ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୨ | ୧ | ଅଧ୍ୱ | ଅଚ୍ଛୁ |
| ୨୨ | ୭ | କୁମର | କୁମ୍ଭାର |
| ୨୨ | ୧୫ | ସତ୍ୟରେ | ସ୍ୱେଚ୍ଛାରେ |
| ୨୯ | ୧୨ | ସୁଖେ | ଦୁଃଖେ |
| ୨୯ | ୧୫ | ନକ୍ଷାସିବ କ୍ରୁତ | ବନସ୍ଥ ସ୍ଥବତ |
| ୩୧ | ୨୫ | ଅପସର | ଅବସର |
| ୪୫ | ୯ | ଛନ୍ଦ୍ୱାବଳାଇସଦ୍ୱସ୍ର | ଛନ୍ଦ୍ୱାନବେସସ୍ର |
| ୪୭ | ୧୦ | କୁମାଶ୍ୱ | ସୁନ୍ଦଶ୍ୱ |
| ୪୭ | ୨୭ | ସୁଖ | ଦୁଃଖ |
| ୪୭ | ୨୨ | ଗଣ୍ଡୁଆ | ଖଣ୍ଡିଆ |
| ୪୯ | ୨୩ | ବଣିଜକୁ ବୁପି | ବଣିଜ କୁରୁଷି |
| ୫୧ | ୪ | ପଢ଼ାଇଣ | ପଢ଼ାଉଣ |
| ୫୧ | ୨୭ | ଆଦରକୁ | ଆଦରିଲୁ |
| ୫୨ | ୧୪ | ମନ | ମନ୍ଥ |
| ୫୫ | ୭ | ଶୁଣିଲେ | ଗୁଣିଲେ |
| ୫୭ | ୮ | ଅଙ୍ଗିକାରେ | ଅଙ୍ଗୀକରେ |
| ୫୭ | ୧୨ | କାଷ୍ଠାଣ୍ଡରେ | କାଢସ୍ଥରେ |
| ୬୩ | ୧୩ | ସେତ | ସେ ତ |
| ୬୩ | ୨୪ | ଦୁଃଖ...ସୁଖ | ସୁଖ .. ଦୁଃଖ |
| ୬୪ | ୨ | କଷ୍ଟାକଷ୍ଟ | କୃଷି କଷ୍ଟ |
| ୭୪ | ୧୭ | ମରନ୍ତ | ରମନ୍ତ ବା ରହନ୍ତ |
| ୬୪ | ୨୨ | ପିଛାର | ପିଛାଇ |
| ୬୭ | ୨ | ରଚଲେ ସୁସ୍ୱାଦ | ରଚଗଲେ ଧନ |
| ୬୭ | ୨ | ମହ୍ୱନ୍ତ | ମହାତ୍ମା |
| ୬୭ | ୪ | ଶୁଣିଲୁ | ସୁଶୀଳ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୬୭ | ୧୭ | ଏକ | ଏତେ |
| ୭୧ | ୧୫ | କାଠିକ କନ୍ଧ | କାଷ୍ଟିକ କାନ୍ଧି |
| ୭୧ | ୨୨ | ଗଢ଼ି ନ | ଗଢ଼ିଣ |
| ୭୫ | ୧୩ | ଯାକେଅଟେ | ଯାକେ |
| ୭୫ | ୨୨ | ଉଡ଼ବାରେ | ଉତକାରେ |
| ୭୭ | ୫ | କୁନ୍ଦ ପୁଷ୍ପେଯେ | ମୁକୁନ୍ଦ ପୁଷ୍ପ |
| ୮୦ | ୧୩ | ରାମଭଦ୍ର | ରାମ ଭ୍ରଥ |
| ୮୦ | ୧୬ | ମଦାଲସୀ | ମଦନା |
| ୮୦ | ୧୯ | ମାକ୍ରକୁ | କୁକ୍ରମା |
| ୮୦ | ୨୦ | ଚନ୍ଦ୍ରାଢନ | ଚନ୍ଦ୍ରାବଣ |
| ୮୦ | ୨୦ | ବାହ୍ୱାରନ୍ତ | ବହ୍ୱରନ୍ତ |
| ୮୧ | ୨୫ | ଆଠ ଦଆଠେ ଷୋଳ କନ୍ଧ | ଷୋଳ ଦଗୁଣେ ବଢଶନ୍ଧ |
| ୮୨ | ୫ | ଦ୍ୱନ | ଦନ |
| ୮୨ | ୧୮ | ମୂଢ଼ | ଦୁଧ |
| ୮୨ | ୧୮ | କରଠୁଲ | ଘୃତଠୁଲ |
| ୮୩ | ୧୯ | ଖେଉଣୀ ସଙ୍ଗେ | ଯେ ଶଙ୍ଖଚନ୍ଦ୍ର |
| ୮୭ | ୮ | ପୁଣ୍ୟ | ପୁଷ୍ପ |
| ୯୦ | ୭ | କ୍ଷୀଲଉଁ...ଶୀରଉଁ | ଶୀରଉଁ...କ୍ଷୀଲଉଁ |
| ୯୧ | ୧୧ | ହ୍ଲଉଁ | ହ୍ଲୀଉଁ |
| ୯୧ | ୧୩ | ଯେ କୃଷ୍ଣ | ଯେ କୃଷ୍ଣ କୃଷ୍ଣ |
| ୯୧ | ୧୫ | ଓଁ କ୍ଲୀଁ | ଓଁ କ୍ଲୀ ଯେ |
| ୯୩ | ୧୦ | ଭୁଞ୍ଜିବୁ ଚଢ଼ିବୁ | ଭୁଞ୍ଜିବେ ଚଢ଼ିବେ |
| ୯୭ | ୪ | ଅଧରେ | ଅର୍ଦ୍ଧରେ |
| ୯୭ | ୭ | ପଚ | ପର |
| ୯୭ | ୭ | ର ଯେ...ଧୀରେ | ରଜ ଯେ...ଧଇରେ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୯୭ | ୧୦ | ଗ୍ରମ | ଶ୍ୟାମା |
| ୯୮ | ୧୨ | ଝଙ୍କାର | ଝଙ୍କର |
| ୯୯ | ୧୩ | ଆଢ଼ | ଅଇଁ |
| ,, | ୧୭ | ମୁକାର | ଅକାର |
| ୧୦୦ | ୧ | ଅଙ୍ଗରୁ ଆଇଁ | ଅକ୍ଷରୁ ଅଇଁ |
| ,, | ୨ | ଅକାରୁ | ଆକାର |
| ,, | ୩ | ଓଁ କାରୁ | ଓଙ୍କାରୁ |
| ୧୦୧ | ୧୨ | ଷୋଳ ଦଳରେ ଷୋଳ ବାର ଦଳରେ ବାର | |
| ,, | ୧୯ | ଅ ମାତ୍ରାରେ | ନଅ ମାତ୍ରାରେ |
| ,, | ୨୦ | ଜର | କଣ୍ଠ |
| ,, | ୨୨ | ନାରାୟଣ | ନାରାୟଣାୟ |
| ୧୦୨ | ୪ | ଝରୁ ଅ ଅଯକଣ | ଝଅରୁ ଅଣ ନମ |
| ୧୦୩ | ୪ | ଏମନ୍ତ | ଅନନ୍ତ |
| ,, | ୫ | ବାର | ଦଶ |
| ,, | ୧୨ | ତରୁ | ତରୁ |
| ,, | ,, | ଶ ରୁ | ଶାରୁ |
| ,, | ୧୭ | ଅରୁ | ଥରୁ |
| ,, | ,, | ଋକାରୁ ବସ | ଋକାର ତନ୍ତୁଁ |
| ,, | ୨୦ | ନରୁ ଜାତ | ଦରୁ ଜ୍ୟୋତ |
| ,, | ,, | ଣ ଆଦ୍ୟରେ | ଣ ଆଦ୍ୟରେ |
| ୧୦୫ | ୧୧ | ଦରେ···ହେବ | ଦରେ ଦୁଇମାତ୍ରାରେ |
| ,, | ୨୨ | ଇ ଯେ | ଇ ଅଯେ |
| ୧୦୭ | ୧୪ | ହଁ ଉରୁ | ବଅରୁ |
| ୧୦୮ | ୧୨ | ମଧୁପୋଢା | ସାଧୁପୋଥା |
| ୧୧୩ | ୫ | ଉକାରର | ଋକାରର |